ପ୍ରଗତି ସାହିତ୍ୟ ମନ୍ଦିରର—ପ୍ରଥମ ଖଣ୍ଡ

# [illegible]

( ଉପନ୍ୟାସ )

ଲେଖକ—

ଶ୍ରୀ ଚନ୍ଦ୍ରମଣି ଦାସ

ପ୍ରକାଶକ—

ପ୍ରଗତି ସାହିତ୍ୟ-ମନ୍ଦିର

କଟକ । । ୧୯୩୮

ପାଞ୍ଚଅଣା

# ଏକ

ଝଟ ଝଟିଆ ବେଳୁ ପ୍ରତିମା ଉଠି ତାର ଛୋଟ ଘରଟିର ବାଡ଼ି—ଦାଣ୍ଡ ଓଳାଇ ଦେଲା । ବାପା ପାଇଁ ଦାନ୍ତକାଠି, ପାଣି ପିଣ୍ଡାରେ ଥୋଇ—ଗାଧୋଇ ଆସିଲା । କୁଡ଼ିଆ ଅଗରେ ଗୋଟିଏ ଶିଙ୍ଗଡ଼ାହାର ଗଛ । ଫୁଲ ଗୁଡ଼ିକ ଭରି ଫୁଟିଥାଏ । ପ୍ରତିମା ଫୁଲ ଡାଲାଟି ଚଉଁରା ଉପରେ ଥୋଇ ଫୁଲ ଗୁଡ଼ିକ ସାଉଁଟୁଥାଏ । ଗଛ ଡାଳରେ ମହୁମାଛି ଗୀତଗାଇ ଭିଡ଼ ହାଟଲେଇ ପକାଇ ଥାନ୍ତି । ପ୍ରତିମା ତାଙ୍କରି ସାଙ୍ଗରେ ତାର ସରଳ ମନଟିକୁ ମିଳାଇ ଗୁଣୁ ଗୁଣୁ ହୋଇ ଗୀତ ଗାଉଥାଏ । ଦଣ୍ଡେ ଘଟିଏ ଛାଡ଼ ଦମ୍କାଏ ସ୍ନିଗ୍ଧ ସୁଲୁଆ ବାଆ ପ୍ରତିମାର ମୁଣ୍ଡରୁ ଲୁଗା କାଢ଼ି ତାର ଘନ ଚକଣ ବାଳ ଭିତରେ ଲୁଚକାଳି ଖେଳି ବାଳ ଗୁଡ଼ିକୁ ଅଢଙ୍ଗ ଭାବରେ ବିଛାଡ଼ି ଦେଇ ଯାଉଥାଏ ।

ଛନ୍ଦ

—ପ୍ରତିମା !

ପ୍ରତିମା ଟେବୁଲ ପର ମୁଣ୍ଡରେ ଲୁଗା ଦେଇ ଦେଇ ଅନାଇ ଦେଲା, ତାର କମଳ ଭାଇ । ସେ ତ କମଳ ଭାଇକୁ ଦେଖେ ସବୁବେଳେ ହସ ହସ ମୁହଁରେ, ସ୍ନେହ ପୂର୍ଣ୍ଣ ଦୃଷ୍ଟିରେ କିନ୍ତୁ ଆଜି ତାର ଶୁଖିଲା ମୁହଁ ଦେଖି, ଲୁହ ଛଳ ଛଳ ଆଖି ଦେଖି, ତାର ମନଟି କଣ ହୋଇଗଲା । ଛାତିଟା ଦପ ଦପ ପଡ଼ିଲା, ସେ ଆଉ କିଛି ଭାବି ପାରିଲା ନାହିଁ । କାଠ ପିତୁଳାଟି ପରି ଠିଆ ହୋଇ କେବଳ ଲୁଗା କାନଟିକୁ ହାତରେ ମୋଡୁଥାଏ ।

କାହାରି ପାଟିରେ କଥା ନାହିଁ, ଦୁହେଁ ବହୁତ କ୍ଷଣ ଗଲ ।

ପ୍ରତିମା ପୁଣି ଥରେ କମଳ ମୁହଁକୁ ଅନାଇ ଦେଖେଯେ, ଲୁହ ଟପଟପ ହୋଇ ମାଟିରେ ପଡୁଛି । ତାର ଧୈର୍ଯ୍ୟ ଆଉ ସହ୍ୟ ହେଲା ନାହିଁ । ଭାବିଲା—କମଳଭାଇ ତା' ଉପରେ ସମ୍ଭବ ଅଭିମାନ କରିଛନ୍ତି, ନୋହିଲେ ଆଠ ଦିନ ହେବ ସେ' ଙ୍କର ଦେଖା ନଥିଲା କାହିଁକି । ମୁଁ ତ ତାଙ୍କୁ କିଛି କହିନାହିଁ, କେବଳ ତାଙ୍କର ଭଲ ପାଇଁ ଦି' ପଦ କହୁଥିଲି ସିନା ! ତାପରେ ପ୍ରତିମା କମଳ ହାତ ଧରି ପକାଇ କହିଲା—"କମଳ ଭାଇ, ମୋ ଉପରେ ରାଗିଛ-ନା ! ଟିକିଏ କଥାରେ ଇମିତ ଅଭିମାନ କରନ୍ତି ପୁଣି ! ତମେ ସିନା ବଡ଼ ଲୋକ, କେହି କିଛି ପାଟି ଫିଟାଇ କହି ନାହାନ୍ତି, ଆଉ ଆମ ଭଳି ଗରିବଙ୍କୁ କଣ କିଏ ଡ଼ରୁଛି । ତମେ କେବେ କେବେ ଟିକିଏ ଅମୃତ ବୋଲି, ମୋ ସାଙ୍ଗରେ ହସି ଖେଳି କଥା ପଦେ କହୁଛ ବୋଲି, ସାହି ପଡ଼ିଶାଙ୍କ ଆଖିରେ କଣ ଯାଉଛି । ଗଡ଼ଖାଇ ତୁଠ ଠାରୁ ଦାଣ୍ଡ ପର୍ଯ୍ୟନ୍ତ ଖାଲି ଆମରି କଥା, କିଏ କେତେ ରକମ ସତ ମିଛ ଜଞ୍ଜାଳ ଯେ ଗାଉଛନ୍ତି ତା' କାନରେ ଶୁଣି ହେବନି । ବାପାଙ୍କ ଆଗରେ ସାହିର କେଇଜଣ ବୃଦ୍ଧ ଲୋକ ଏ ବିଷୟରେ କହିଲେଣି, ମା'ଙ୍କୁ ମଧ୍ୟ କିନ୍ତୁ ସେ କଥା ସେ ଜମା ଶୁଣୁ ନାହାନ୍ତି—ଶୁଣି କେବଳ ହସନ୍ତି । ସେଇଥି ପାଇ ମୁଁ ସିନା କହିଲି, ମୋ ଲାଗି ତମେ କାହିଁକି ଏତେ ନିନ୍ଦା ଯାଇବ, ତମ ବାପା ଜାଣିବେ, ମନରୁ ପାଶୋରି ଦିଅ ବୋଲି । ତମେ କଣ ଭାବୁଛ ମୁଁ ଅନ୍ତର ସହିତ ଇମିତ କହୁଛି ବୋଲି । ଅଠଦିନ ହେବ

ଦେଖା ଦେଲ ନାହିଁ ବୋଲି ମୋ ମନ ଯେ କଣ ହେଉଛି, ସେ କଥା ତମେ କୁଅଁଭୁ ଜାଣିବ । ସବୁ ବେଳେ ତମର ପଥକୁ ଅନାଇ ଅନାଇ ଦିନ ଯାଉଛି ଏହା କହୁ କହୁ ପ୍ରତିମା କାନ୍ଦ ପକାଇଲା ।

କମଳ ଲତା କାନରେ ତା' ଅଖିରୁ ଲୁହ ପୋଛି ଦେଇ କହିଲା— ନା, ପ୍ରତିମା, ତୋର ଏଇ କଥାରେ କଣ ମୁଁ ଅଭିମାନ କରିଛି ବୋଲି ଭାବୁଛୁ ! ତା' ଠାରୁ ବଳି ଘଟିଛି ଆଜି ଗୋଟା ବଡ଼ ଘଟଣା । ସେଇ କଥା ଭାବି ଭାବି ଆଜକୁ ଅଠଦିନ ହେବ ମୋ ଅଖିକୁ ନିଦ ନାହିଁ । ତୋର ସରଳ ମନରେ ସେହି ନିଷ୍ଠୁର ଖବର ଦେବାକୁ ମୋର ଆଦୌ ଇଚ୍ଛା ନାହିଁ, କିନ୍ତୁ ନଶୁଣାଇ ଯେ ମୋର ଉପାୟ ନାହିଁ । କମଳ ଦଣ୍ଡେ ରହିଗଲା ।

ପ୍ରତିମା ବଡ଼ ଉତ୍ତ୍ରସ୍ତ ହୋଇ ପଡ଼ି କହିଲା—କମଳ ଭାଇ କି ନିଷ୍ଠୁର ଖବର !

କମଳ ଟିକିଏ ପ୍ରତିମା ପାଖକୁ ଘୁଞ୍ଚି ଆସି କହିଲା—ପ୍ରତିମା, ତମର ସର୍ବନାଶ ।

ପ୍ରତିମାର ଭୟରେ ମୁହଁଟି ରଙ୍ଗା ପଡ଼ିଗଲା ! ଢଳ ଢଳ ଅଖି ଯୋଡ଼ିକ ଉପରକୁ ଉଠିଗଲା । ସେ କାହାକୁ ଖୋଜିଲା ପରି ଚତୁର୍ଦ୍ଦିଗକୁ ଚାହିଁ ଥରି ଥରି ଗୁହାରି କହିଲା--କମଳ ଭାଇ, ଆମର ସର୍ବନାଶ ! କାହିଁକି, ଆମେତ ଗରିବ, ମୂଲ ଲାଗିଲେ ଗଣ୍ଡେ ଖାଉଛୁ, ଆମେତ କାହାର କିଛି ଅନିଷ୍ଟ କରିନୁ, ଆମର ସର୍ବନାଶ କିଏ କାହିଁକି କରିବ—କମଳ ଭାଇ !

କମଳ ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ କହିଲା—ହଁ ସତ, ପ୍ରତିମା । ତମେ କାହାର କିଛି ଅନିଷ୍ଟ କରିନ, ତମର କେହି କିଛି ଅନିଷ୍ଟ କରିବେ ନାହିଁ ହେଲା, କିନ୍ତୁ ମୋ ବାପାଙ୍କ କଥା ଜାଣ ! ସେ କେଡ଼େ ନିଷ୍ଠୁର ଅଉ ନିର୍ଦ୍ଦୟୀ । ଦୁଃଖୀ ଅଖିର ଲୁହ ଦେଖିଲେ କଣ ତାଙ୍କର ହୃଦୟ ତରଳେ ! ଦଣ୍ଡ, ଚକି, ନଜରାନା ମାନଙ୍କର ତଣ୍ଟି ଚପି ଧନ ନେବା ହିଁ ତାଙ୍କର ଯେମିତି ଗୋଟାଏ ଆନନ୍ଦ ! ଆଜକୁ ପାଞ୍ଚ ବର୍ଷ ତଳେ ତୋର ବାପା ତୋ' ବଡ଼ ଭଉଣୀ ବିବାହ ପାଇଁ ଯେଉଁ ପଚିଶଟି ଟଙ୍କା ଆଣିଥିଲେ,

ତାହା ଏବେ ବାପା ସୁଧ ମୂଳ ଭିଡ଼ି ଶହେ ଟଙ୍କାରେ ନୀଲାମ କରିଛନ୍ତି । କାଲି ତମ ଘର କ୍ରୋକ ହେବ । ତମର ସର୍ବସ୍ୱ ଲୁଣ୍ଠନ କରି ସେ ଶାନ୍ତ ହେବେ । ଏ ଯାଗା ଖଣ୍ଡିକ ବି ଯିବ, ତମରତ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ରହିବ ନାହିଁ, କଣ କରିବ ପ୍ରତିମା !

ପ୍ରତିମା ମନରେ ଟିକିଏ ଦମ୍ଭ ଧରି କହିଲା—ଏଇ କଥା ତ । ଯାହାଙ୍କ ଠାରୁ ବାପା କରଜ ଆଣିଛନ୍ତି, ତାଙ୍କର ପୁଅ ତମେ, ଆମର ଆଉ ଚିନ୍ତା କଣ ।

କମଳ ଟିକିଏ ହସି କହିଲା—ପ୍ରତିମା, ତୁ ଭୁଲ ବୁଝିଛୁ—ଏକାବେଳକେ ଭୁଲ । ଆଖି ଦେଖିଲୁ ବର୍ତ୍ତମାନତ ମୋର ସମ୍ପତ୍ତିରେ କିଛି ଅଧିକାର ନାହିଁ । ତା'ପରେ ତୁ ଜାଣୁ ମୋ ବାପା କପଟ ଲୋକ । ମା' ମଲାଦିନୁ ମୋର କଣ କୌଣସି ଅଧିକାର ଅଛି ସେଠି । ଘରର ବାହାର ଠାରୁ ମୋର ସ୍ଥାନ ଅଜବ ଗାତରେ । ମୋର ବି ସେଠି ରହିବାକୁ ଜମାରୁ ଇଚ୍ଛା ନାହିଁ । ସେ ଘର ନୁହେଁ, ନରକଠୁ ବଳି । ସେ କଥା କିଏ ଜାଣୁଛି, ଧର୍ମର ନାମ ନେଇ ଗରିବ ମାନଙ୍କର ତଣ୍ଟି ଚିପି ସେ ବଡଲୋକ ବୋଲି ପରିଚିତ । କାହାକୁ ଡରାଇ, କାହାକୁ ଷଡ଼ଯନ୍ତ୍ରରେ ପକାଇ, ଦିନଦିନ ସରଳ ବାଳିକା ଓ କୁଳବଧୂ ମାନଙ୍କର ସତୀତ୍ୱ ନଷ୍ଟ କରିବାହିଁ ତାଙ୍କର ଧର୍ମ । ସେ ଘର ଭିତରୁ ସେତେଥ ଗରିବ ବାଳିକା ମାନଙ୍କର ଆଖିରୁ ଲୁହ ଗଳୁଛି । ତା' ପ୍ରକୃତରେ ଲୁହ ନୁହେଁ ରକ୍ତ । ସେମାନଙ୍କର ବେଦନା ଭରା ଦୀର୍ଘଶ୍ୱାସରେ ଗୃହଅଙ୍ଗ ଆଚ୍ଛାଦିତ । ସେହିସବୁ ତ ମନା କରିବାରୁ ବାପାଙ୍କର ମୁଁ ଶତ୍ରୁ । ଏହିସବୁ କାମକରି ତ ସେ ଜମିଦାର ବୋଲି ଗର୍ବ କରନ୍ତି । ତମ କଥା କହିଲେ କଣ ସେ ଶୁଣିବେ ! ଅଧିକ ରାଗ କରିବେ । ତଥାପି ପ୍ରତିମା ତମର ଉଦ୍ଧାର ପାଇଁ ମୁଁ ପ୍ରାଣପଣେ ଚେଷ୍ଟା କରିବି ।

ଆଉ ଗୋଟିଏ କଥା, ମନରେ କଷ୍ଟ କରିବୁ ନି, ମୁଁ ତମ ଘରକୁ କେବେ କେବେ ଆସୁଥିଲି ବୋଲି ବାପା ଏଠିକୁ ଆସିବାକୁ ମନା କରିଛନ୍ତି । ମୋତେ କାଲି ସକାଳୁ କଟକକୁ ଯିବାକୁ ହେବ । ଏହା କହୁଁ କହୁଁ ତା' ଆଖି ଓଦା ହୋଇ ଆସିଲା ।

ପ୍ରତିମା ତାଙ୍କର ସର୍ବନାଶ କଥା ଶୁଣି ମନରେ ଯେତେ କଷ୍ଟ କଷ୍ଟ-ନଥିଲା, ବର୍ତ୍ତମାନ ତାର କମଳ ଭାଇ ଆସିବ ନାହିଁ, ଶୋକ୍ ତା' ଦି'ଗୁଣ ବଢ଼ିଗଲା । ସେ ଅଖିରେ ଲୁଗା ଦେଇ ଫୁଲ ଡାଲାଟି ଧରି ଘର ଭିତରକୁ ପଶିଗଲା ।

ପ୍ରତିମାର ବୋଉ ରମାଦେବୀ ସେତେବେଳକୁ ଭଣ୍ଟ ପିଣ୍ଡାରେ ବସି ବାଇଗଣ, ସାରୁ ଦ'ଟା କାଟୁଥିଲେ । ଚୁଲିରେ ଭାତ ହାଣ୍ଡିଟା ଗଦ୍ ଫୁଟୁଥିଲା ତାକ ଶୁଣାଇ । ପ୍ରତିମା ଫୁଲ ଡାଲାଟି ପିଣ୍ଡାରେ ଥୋଇଦେଇ ବୋଉ ପାଖରେ ଯାଇଁ ନଥ କଳା ବସିପଡ଼ିଲା । ରମାଦେବୀ ଝିଅ କାନ୍ଦୁଛି ବୋଲି ଉଠିପଡ଼ି କହିଲେ—ମା', କାନ୍ଦୁଛୁ କାହିଁକି, ତୋତେ କିଏ କଣ କହିଲା ।

—ପ୍ରତିମା 'କଇଁ କଇଁ' ହୋଇ କହିଲା—ମା' ଆମର କାଲି ସର୍ବନାଶ । ଜମିଦାର ଆମର ସର୍ବସ୍ୱ ଲୁଟି କରିନେବେ । ଆମେ ମୁଣ୍ଡ ଗୁଞ୍ଜିବା କେଉଁଠି ମା' ।

କମଳ ଓଳପାଖରେ ପ୍ରତିମା ପଛେ ପଛେ ଯାଇଁ ଠିଆ ହୋଇଗଲା । କମଳକୁ ରମା ଦେବୀ ଦେଖି ମୁଣ୍ଡରେ ଟିକିଏ ଲୁଗାଦେଇ କହିଲେ—ବାବା, ଗରିବ ଦୁଆରେ ବସ । ପ୍ରତିମାକୁ ହଲାଇଦେଇ କହିଲେ—ତୋ କମଳଭାଇ ସାଙ୍ଗରେ ଯା କଥାବାର୍ତ୍ତା କରିବୁ ।

ପ୍ରତିମା କାନ୍ଦି କହିଲା—ନା' ମାଆ, ସେ ଆମଘରକୁ ଆଉ ଆସିବେନି, ତାଙ୍କ ବାପା ଯେ ମନା କରିଛନ୍ତି ।

ପ୍ରତିମା ପାଟିରୁ କଥା ନ ସରୁଣୁ କମଳ କହିଲା—ମା' ତମଘରର ବୋରଖ ହେବ । ତମର ଯାହା କିଛି ଅଛି ବାପା ତ ତାହା ବୋହିନେବେ, ତମେ ମୁଣ୍ଡ ଗୁଞ୍ଜିବ କେଉଁଠି ମା' ।

ରମା ଦେବୀ ଦଣ୍ଡେ ରହିଗଲେ । ଅଖି କୋଣରୁ ଲୁଗା କାନିରେ ଲୁହ ପୋଛୁ ପୋଛୁ କହିଲେ—ଉପାୟ କଣ ଅଛି । ଅନେକ ଘର ଦୁଃଖୀ, ଅଧା ପେଟରେ ଦିନ ଯାଉଛି । ଘରେତ ଗୋଟିଏ କାଣି କଉଡ଼ି ନାହିଁ,

ସାଢ଼

ଯେମିତି କିଛି ସମ୍ପତ୍ତି ବାଡ଼ି ବା ଘରର କଂସା ବାସନ ଅଛି ଯେ—ବିକ୍ରି କରି କରନ୍ତି ସ୍ଥିର । ଏଇ ମାଲ ଛଡ଼ା ଆଉ ଉପାୟ କଣ-ବା ।

କମଳ ବହୁତ କ୍ଷଣ ନୀରବ ରହି କହିଲା—ମା' ତମେ କାନ୍ଦନା । ମନରେ ଦମ୍ଭ ଧର । ଅଣ୍ଟା ସ୍ୱଚ୍ଛଭାବରେ ଯଦି କିଛି ଉପାର୍ଜ୍ଜନ କରିପାରେ । କମଳ ସେଠାରେ ଆଉ ନ ବସି ଚାଲି ବାକୁ ଲାଗିଲା ।

ପ୍ରଭମା ଛଳ ଛଳ ଆଖିରେ ଦୁଆର ବନ୍ଧ ଧରି ତାର କମଳ ଯାଉଛି ଚାହିଁଥାଏ ।

## ଦୁଇ

ସେତେବେଳକୁ ଯାଏ ଆକାଶର ପଶ୍ଚିମ ପଟରେ ସନ୍ଧ୍ୟାରାଣୀର ଆଗମନ ପାଇଁ, ଗୋଟାଏ ହ୍ଲଦେଲ୍ ପରଦା ଟାଣୁଥାଏ। ପାଗଳ ପବନ କେତେଜାତିକା ଫୁଲର ବାସନା ଧରି ସେହି ଆଡ଼କୁ ଛୁଟି ଗଲା ବେଳେ ଚାରିଆଡ଼ ମହକ ହେଉଥାଏ। ବଗ ଗୁଡ଼ାକ ପଲକୁ ପଲ ତାଙ୍କର ଗୃହ ଉପରେ ଦେଇ ଡକା ଡକି ହୋଇ ଉଡ଼ିଯାଉ ଥାନ୍ତି। ପ୍ରତିମା ପ୍ରତିଦିନ ଏହି ସବୁ ଦେଖି ଆନନ୍ଦରେ ବିହ୍ୱଳ ହୋଇ ଉଠେ। କିନ୍ତୁ ଆଜି.........

ଠିକ ଏହାର କିଛି ସମୟ ପରେ ପ୍ରତିମାର ବାପା ଗୋପାଳ ଚନ୍ଦ୍ର ବାଡ଼ି ଖଣ୍ଡିଏ ଧରି ଦୁଆର ମୁହଁରେ ଖଡ଼ ଖଡ଼ କଲେ। ପ୍ରତିମା ଝାପଟି ଲଗାଉ ଲଗାଉ କହିଲା—ବାପା, ବାପା ଯାଉଛି।

ଗୋପାଳ ଚନ୍ଦ୍ର ପିଣ୍ଡା ଖୁଣ୍ଟକୁ ବାଡ଼ି ଖଣ୍ଡିକ ଠେଲି ଦେଇ ଗୁମ ହୋଇ ବସି ପଡ଼ିଲେ । ତାଙ୍କ ଲୋଷଗୁ କୋଷ୍ଟ ଦେହଟିରୁ ଗମ ଗମ ହୋଇ ଝାଳ ବୋହି ଯାଉ ଥାଏ । ରମା ଦେବୀ ବୀଅଣା ଖଣ୍ଡେ ଧରି ହଲାଉ ଥାନ୍ତି । ଘଡ଼ିଏ ଗଲା, ରମା ଦେବୀ କହିଲେ ପ୍ରତିମା, ବାପାକୁ ଗଣ୍ଡେ ବାଢ଼ି ଦେଲୁ । ପ୍ରତିମା ପିଣ୍ଡାରେ ଆସିନ ଖଣ୍ଡିଏ ପକାଇ ଭାତ ଗଣ୍ଡିଏ ତିଅଣ ଟିକିଏ ବାଢ଼ି ଦେଲା ।

ଘୋଠାଏ ପାଖରୁ ଘରେ ପଡ଼ିଛି ଖଣ୍ଡେ ଦଉଡ଼ିଆ ଖଟ । ପ୍ରତିମା ତର ତର କରି ଖଣ୍ଡେ ଛିଣ୍ଡା ମସିଣା ତା' ଉପରେ ପକାଇ ଦେଲା, ସାତସିଆଁ ଦରବା କେତେ ଖଣ୍ଡି ବିଛାଇ ଦେଲା । ଗୋପାଳଚନ୍ଦ୍ର ତା' ଉପରେ ଗଡ଼ି ପଡ଼ି ହେଲେ । ରମା ଦେବୀ ତାଙ୍କ ଗୋଡ଼ରେ ଟିକିଏ ହାତ ମାରି ଦେଉଁ ଦେଉଁ ତାଙ୍କ ଆଖିରୁ ଲୁହ ଥପ ଥପ ହୋଇ ବହି ପଡ଼ିଲା ।—ଗୋପାଳ ଚନ୍ଦ୍ର ଚମକି ପଡ଼ି କହିଲେ—କାନ୍ଦୁଛ !

“କାନ୍ଦିବା ତ ଚିରଦିନ ନସିବରେ ଲେଖା ହୋଇଛି । ଆଜି ନୂଆ ନୁହେଁ । ଶୁଣ, କାଲି ଜମିଦାରର ଟଙ୍କା ପରିଶୋଧ ନ କଲେ ଘର ଢିକାରଖ ହେବ, ଦୁଆରେ ତାଲା ପଡ଼ିବ । ପ୍ରତିମାକୁ ନେଇ କୁଆଡ଼େ ମୁଣ୍ଡ ଗୁଞ୍ଜିବ !

ଗୋପାଳଚନ୍ଦ୍ର ଏ ଖବର ଶୁଣି ଚମକି ପଡ଼ିଲେ । ତାଙ୍କ ଦେହଟା ଥରି ଉଠିଲା, ଛାତିରୁ କଣ ଗୋଟାଏ ଖସି ପଡ଼ିଲା ଭଳି ଲାଗିଲା । ସେ ହୁ କିନା ଉଠି ପଡ଼ିଲେ । ପାଗଳଙ୍କ ପରି କହିବାକୁ ଲାଗିଲେ ଟଙ୍କା, ଟଙ୍କା ପାଇବି କେଉଁଠୁ । ଜମିଦାରର କଣ ନ୍ୟାୟ ବିଚାର ନାହିଁ । ଆଗରେ ଦେଖୁଛି ମୁଁ କେମିତି ଦୁଃଖରେ ଦିନ କଟୁଛି, ଟଙ୍କା ପାଇଁ ପୁଣି ଘର କୋରକ ହେବ, ଆଉ ମୋ ପ୍ରତିମା···

ସେ ଦିନ ଆଉ ତାଙ୍କ ଆଖିକୁ ନିଦ ଆସି ନାହିଁ ।

+ + +

ସେଦିନ ରାତି । ଘୋର ଅନ୍ଧାର । ମୁହଁକୁ ମୁହଁ ଦିଶୁନାହିଁ । ଆକାଶ ପାତାଳ ଏକା ପରି ଜଣା ପଡ଼ୁଛି । ମୂଷଳ ଧାରାରେ ମେଘ । ପବନଟା ଖୁବ ଜୋରରେ ବହୁଛି ଯେପରି ସାରା ସଂସାରଟା ଧ୍ୱଂସ କରିବାରେ ଲାଗି ପଡ଼ିଛି । କମଳ ଆଖିକୁ ଆଜି ଜମା ନିଦ ନାହିଁ, ଆଜି ରାତି ଭିତରେ ସାନ ଝିଅଟିକୁ ରକ୍ଷା କରିବାକୁ ହେବ ।

ଜମିଦାର ଘରେ ସମସ୍ତେ ଖାଇ ପିଇ ଶୋଇଲେ । ରାତି ଦୁଇଟା । କମଳ ବିଛଣାରୁ ଉଠି ଆଉ ଘରକୁ ଗଲା, ଜମିଦାରଙ୍କ ହାତ ବାକ୍ସରୁ ଅନ୍ୟ ଚାବି ଲଗାଇ ପଚାଶଟି ଟଙ୍କା ଆଣି ସେ ଘରୁ ଖୁବ ଚଞ୍ଚଳ ପଳାଇ ଆସିଲା ।

ସେହି ମୁହୂର୍ତ୍ତ ରାତିରେ ଡର ଭୟ ନମାନି, କଣ୍ଟା ଝଣ୍ଟା ନମାନି ଚାଲିଲା ପ୍ରତିମା ଘରକୁ । ନିଶା ସାଇଁ ସାଇଁ ଶବ୍ଦ ହେଉଥାଏ । ଗଛ ପତ୍ରର ଗୁଡ଼ା ହଲ ଚଲ ନ ହୋଇ କାନ ପାରି ଯେମିତି କଣ ଶୁଣୁଥାନ୍ତି । ଦଣ୍ଡେ ଦଣ୍ଡେ ଛାଡ଼ି ଝିଙ୍କାରି ଗୁଡ଼ା ନିସ୍ତବ୍ଧତା ରାଜ୍ୟର ପହରା ଦେଲା ପରି ଚିତ୍କାର ଛାଡୁଥାନ୍ତି । କମଳ ଆସି ପ୍ରତିମା ଘରେ ପହଞ୍ଚିଲା । କାହାକୁ ନ ଡାକି ପ୍ରତିମା ଯେଉଁ କୋଠରୀରେ ଶୁଏ, ସେହି କୋଠରୀ ପାଖକୁ ଗଲା । ଖିଡ଼କିଟି ମୁକୁଳା । ପ୍ରତିମା ବିଛଣାଟି ଉପରେ ଘୁମାଇ ପଡ଼ିଛି । ତାର ଆଖିରୁ ଲୁହ ସେ ଯେମିତି ଶୁଖି ନ ଥାଏ, ଘରରେ ଗୋଟାଏ କଣରେ ଦୀପଟିଏ ଧକ୍ ଧକ୍ ହୋଇ ଜଳୁଥାଏ । କମଳ ଦଣ୍ଡେ ସେ ଝରକା ପାଖରେ ଠିଆ ହେଲା । ପ୍ରତିମା ମୁହଁକୁ ଚାହିଁ କେତେ କଣ ଭାବିଲା ।

ତା' ପରେ ଝରକାଟିକୁ ଠକଠକ କରି ଡାକିଲା, ପ୍ରତିମା,— ଶୋଇ ପଡ଼ିଲଣି !

ପ୍ରତିମାର ସେହି ନିଦର ଢୁଳା ଢୁଳା ଆଖି ଦୁଇଟି ହଠାତ୍ ଖୋଲି ହୋଇ ଗଲା । ସେ ଦୀପଟି ଭଲକରି ତେଜି ଦେଇ ଝରକା ପାଖକୁ ଅନାଇଦେଲା ତାର କମଳ ଭାଇ ।

ଏଗାର

କମଳ ଘର ଭିତରକୁ ପଶି ଯାଇ ଥକା ହୋଇ ବସିପଡ଼ିଲା । ପ୍ରତିମା ତାକୁ ଏ ପରି ଅବସ୍ଥାରେ ଦେଖି ଅସ୍ଥିର ହୋଇଗଲା । ଲୁଗା ଜାମିଜ ସବୁ କାଦୁଅରେ ଜର୍ଜ୍ଜରିତ । କଣ୍ଟା ଝଣ୍ଟାରେ ଗୋଡ଼ କ୍ଷତ ଠାଏଁ ଠାଏଁ ରକ୍ତ ବହୁଛି । ସେ ଅତି ଡେରି ନ କରି ଗୁହିଆଳ ଲୁଗା ଖଣ୍ଡିଏ ଆଣି ଦେଲା । ଲୁଗା ଜାମିଜ ସବୁ ଧୋଇ ଚମ୍ପୁଡ଼ି ଶୁଖାଇ ଦେଲା । ନିଜ ଲୁଗା କାନିରେ କମଳର ଗୋଡ଼ ଦୁଇଟି ପୋଛୁ ପୋଛୁ କହିଲା—କମଳ ଭାଇ । ଅଜମ ଗଣିବ । ଆମ ପ୍ରତି ଏତେ ଦୟା କାହିଁକି ? ତମେ ବିପୁଳ ସମ୍ପତ୍ତିର ଅଧିକାରୀ । ତମ ବାପା ଯଦି ଏପରି ଅବସ୍ଥାରେ ଦେଖନ୍ତେ, ତାହାହେଲେ ଆମର ଅବସ୍ଥା ରହନ୍ତା ତ ।

କମଳ ଟିକିଏ ହସି ତାର ଗାଲ ଦୁଇଟିକୁ ସ୍ନେହରେ ଚିପିଦେଇ କହିଲା—ପ୍ରତିମା, ମୋତେ ଥଟ୍ଟା କରୁଛୁ ନା ! ମୋର ଯେଉଁ ସମ୍ପତ୍ତି ତୋର ସେ କଣ ନୁହେଁ । ପ୍ରତିମା ଲଜ୍ଜାରେ ମୁହଁ ପୋତିଲା ।

ଦୁଇଟି ନୂତନ ପ୍ରାଣ ବହୁତ କ୍ଷଣ ସୁଖରେ କଥା ବାର୍ତ୍ତା ହେଲା ପରେ କମଳ ଘଣ୍ଟାଟାକୁ ଅନାଇ ଦେଲା ନଅଟା ବାଜିବ । ସେ ତର ତର ହୋଇ ଜାମିଜ ପିନ୍ଧି କହିଲା-ପ୍ରତିମା ଡେରି ହୋଇ ଗଲାଣି । ରାତି ପାହିଲେ ପୁଣି କଟକ ଯିବାକୁ ପଡ଼ିବ ।

ପ୍ରତିମା ଲୁହରେ ଯେମିତି କଣ ଚୋଟେ ଖସି ପଡ଼ିଲା । ତାର ଗୃହ ପାଖ ଜଙ୍ଗଲପରି ଲାଗିଲା । ଗୃହ ଅତି ଅନ୍ଧାର ଦେଖାଗଲା । ସେ କମଳ ଗୋଡ଼ ଧରି ପକାଇ ବଡ଼ ବିକଳ ହୋଇ କାନ୍ଦି କାନ୍ଦି କହିଲା—କମଳ ଭାଇ, ତମେ କୁଆଡ଼େ ଯାଅନା, ବାପା ଯଦି ମନା କରୁଛନ୍ତି ତାହାହେଲେ ଏ କଟକକୁ ନ ଯାଅ, ମୋର ଲାଗି କାହିଁକି ଘରଛାଡ଼ି କେତେ ଦୂରକୁ ଯିବ । ମୋତେ କଣ ଭୁଲି ପାରିବ ନାହିଁ— କମଳ ଭାଇ !

କମଳ ଲୁଗା କାନିରେ ଲୁହ ପୋଛି ଦେଲା । ପ୍ରତିମା ଚଉଁକି ହୋଇ କମଳ କୋଳରେ ମୁଣ୍ଡଟି ରଖି କାନ୍ଦୁଥାଏ । କମଳ ତା ମୁଣ୍ଡ ବାଳକୁ ଆଉଁସି ଦେଇ କହିଲା—ପ୍ରତିମା, ମୋ ଦୁନିଆଟି ପର, ଇମିତି ଛୁଆପିଲାଙ୍କ ପରି କାନ୍ଦନ୍ତିନା ! ମନରେ ଦମ୍ଭ ଧର, ମୁଁ ଯେତେ ଦୂରରେ ଥିଲେ ଦୁଖା

ବା'ର

ତୋର ଅଛ ଜାକଟରେ। ଏଇ ପଚିଶ ଟଙ୍କା ନେ, ବାପାଙ୍କୁ ଦେବୁ। କାଲି କୋରଷ କରିବାକୁ ଆସିଲବେଳେ ପଚିଶ ଟଙ୍କା ଦେଇ ଦେବ, ଅଉ ଟଙ୍କା ପରେ ଦେବାକୁ କହିବ।

କମଳ ଲୁହ ଛଳ୨ ଆଖିରେ ପ୍ରତିମା ଘରୁ ବିଦାୟ ନେଇ ଆସିଲା। ପ୍ରତିମା ଦୁଆର ବନ୍ଧ ଧରି କାଠ ପିତୁଳାଟି ପରି ଠିଆ ହୋଇଥାଏ। ତାର ଆଖିରୁ ଲୁହ ଟପ୍୨ ହୋଇ ପଡୁଥାଏ। କମଳ ନିବିଡ଼ ଅନ୍ଧାର ଭିତରେ କୁଆଡ଼େ ଲୁଚିଗଲା।

# ତିନି

ଗତ ପାହୁ ସୂର୍ଯ୍ୟ କିରଣ ଗୃହଅଙ୍ଗେ ବିସ୍ତୃତ ହୋଇ ପଡ଼ିଲା ତଥାପି ପ୍ରତିମା ତାହାର ବାପ ମା'ଙ୍କ ଆଖିରେ ଘୋର ଅନ୍ଧାର । ମୁହଁରେ ସବୁସତ୍ତା ନାହିଁ, ପାଟିରୁ କଥା ନାହିଁ—ସତେ ଯେମିତି କେଉଁ ଯୁଗର ଗୋଟିଏ ଲେଖା ପାଷାଣ ମୂର୍ତ୍ତି । ଆଖି ପିଛୁଡ଼ା ପଡ଼ୁନାହିଁ, ସେମାନେ ଚାହିଁଛନ୍ତି ଦୂରଦୂର-ଦିଗବଳୟର ଶେଷ ସୀମା ପର୍ଯ୍ୟନ୍ତ । ତାଙ୍କ ଚକ୍ଷୁ ଆଗରେ ନାଚି ଉଠୁଛି, ଜମିଦାରଙ୍କ ପିଅଦା ଆସୁଛି, ନାଗରୀ ପିଠି କୁଡ଼ଅର କବାଟ ଖଣ୍ଡେ ତାଡ଼ୁଛନ୍ତି । ଯେତେ ନେହୁରା ମିନ୍ତି କଲେ ସୁଦ୍ଧା—ସେମାନଙ୍କ ପାଷାଣ ହୃଦୟ ତରଳୁନାହିଁ, ଇମିତି କେତେ ।

ତନ ଦ'ଘଡ଼ି ସରିକି, ଦାଣ୍ଡରେ ନାଗରୀ ପଡ଼ା ହେଲା, ସେହି କ୍ଷୀଣ ସ୍ୱରରେ ଗାଆଁର ପରବାରଟିର ମନ ଶତ ଗୁଣରେ ଅତଙ୍କିତ ହୋଇ ଉଠିଲା । ପ୍ରତିମା ଦୁଆର ମୁହଁରେ ଗାଲରେ ହାତ ଦେଇ ବସି

ଥିଲା । ତାର ସରଳ ମନଟି ଅଧୈର୍ଯ୍ୟ ହୋଇ ପଡ଼ିଲା—ଜମିଦାରଙ୍କ ଏହି ସ୍ୱପଣୋକୃତ ଲୋକ ଗୁଣ୍ଡାଙ୍କୁ ଦେଖି । ସେ ଆଉ ବସିପାରିଲା ନାହିଁ, କଇଁ କଇଁ ହୋଇ କାନ୍ଦ ମୁହଁରେ ଲୁଗା ଦେଇ ବାରିପଟକୁ ଚାଲିଗଲା ।

ନାଗରା ସ୍ୱରରେ ସାହିପଡ଼ିଶା ଘରୁ ବାହାରି ଆସିଲେ । ଗାଁର ପୁରୁଖା ପୁରୁଖା ଲୋକ ଅଣ୍ଟାରେ ହାତଦେଇ ମୁରୁକି ମୁରୁକି ହସିଲେ । କେହି ଜଣେ ଦୁ'ଜଣ ଘଟଣା ସ୍ଥଳରୁ ଆସିଲା ବେଳେକୁ ଗାଁର ନେତା, ଆଖି ଲାଲ ଲାଲ କରି କହିଲେ—ଯାଅନା, ଯାଅନା, ସେ ପରିବାର ଧ୍ୱଂସ ହେଉ । ଏ ଗାଁରେ ସେ ବେଶ୍ୟାଳୟ ଖୋଲିଛି । କେଉଁ ଯୁଗରେ ଦେଖା ନଥିଲା ହୋ—ଘରେ ରହିବା ଝିଅ ସଙ୍ଗରେ ଆଉ ଗୋଟାଏ ଟୋକା ଏକାଠି ବସା ଉଠା କରିବା । ସେ ଜାତି ବାଛଦ । ତା' ଦୁଆରେ ପାଦ ଦେଲେ, ପଞ୍ଚ ଗୋବ୍ୟ କରିବାକୁ ପଡ଼ିବ ।

ଆଉ ଜଣେ ଅନ୍ୟ ଜଣର କଥା ନସରୁଣୁ କହିଲା—ଧରମ ପୁଣି ଅଛିତ ! ଚକୁଳି ପିଠା ପରି ଓଲଟି ଗଲା । ଦୁ' ଆଖିରେ ମଣିଷ ଦେଖିଲୁ, ଯେଉଁ କାଣ୍ଡ ଦିନା କେତେ ଏଠି ଲାଗିଲା—ଜନମର ହେଲାଦିନୁ ଏ ଆଖିରେ ମଣିଷ ଦେଖି ନଥିଲା ।

ଅଉ କଏ ବଢ଼ୁଆଟା କାଖରେ ଯାକି ଗୁଆ ଖଣ୍ଡେ ପାଟିରେ ପକାଉ ପକାଉ କାନ ପାଖରେ କହିଲା—କଣ କରୁଚ ଭୋଳାନନ୍ଦ ! ଘରଡ଼ିହ ଖଣ୍ଡେ ଭଲ ରସାଳିଆ ଜମି । କହନ୍ତୁ ଯଦି କିଛି ଟଙ୍କା ସଂଗ୍ରହ କର, ତୁମେ ଜମିଦାରଙ୍କଠୁଁ କବଲା କରି ଆଣନ୍ତେ ।

ଏତିକି ନୁହେଁ— ବାରି ପଟରେ ମାଇପେ ମେଳା ବାନ୍ଧି ଦେଖିଲେ । କିଏ କହିଲା—ମଲା ! କଣ ହେଲାଣିକି ଅଉରି କଣ ହେବ । ଏ ଗାଁରେ କଳଙ୍କ ଲଗାଇଲା । ଧରମ ପୁଣି ଯିବ ବୁଝୁଅଛେ । ଦିନ ବାଢ଼ି ପୁଣି କମିଲା ହଉଛି ।

ଜମିଦାରଙ୍କ ଗୁମାସ୍ତା ହୁକୁମ ଦେଲେ ଅନାଉଛ କଣ ରେ । କବାଟ ଭାଙ୍ଗ, କଂସା ବାସନ କଣ ଅଛି ବୋହି ଆଣ । ଲୋକ ଗୁଡ଼ାକ ଭୁସ ଭାସ ହୋଇ ଘରଭିତରକୁ ପଶିବାକୁ ଆରମ୍ଭ କଲେ ।

ପଦ୍ମକ୍ର

ଗୋପାଳ ଚନ୍ଦ୍ର ସେମାନଙ୍କୁ ଘରକୁ ପଶିବାରୁ ବାରଣ କରି ଗ ମାସ୍ତାଙ୍କ ପାଖକୁ ଆସିଲେ । ବେକରେ ଲୁଗା କାନି ପକାଇ ହାତ ଯୋଡ଼ି କେତେ କାକୁତି ମିନତି ହୋଇ କହିଲେ—ଆପଣ ମୋ ରଙ୍କା । ହଜୁରଙ୍କ ଓଳି ତଳେ କୁଡ଼ିଆ ବାନ୍ଧି ରହିଛୁ । ଜାଣନ୍ତି, ମୁଁ କେଡ଼େ ଗରିବ । ଦିନ ଦିନରେ ଓଳିଏ ଖାଉଛୁ । ଯାହା ଥିଲା ବିକି ଭାଙ୍ଗି ବଡ ଝିଅର ବିବାହ ଦେଲି ଆଉ ଅଛି କଣ ! କୁଡ଼ିଆ ଖଣ୍ଡ ଛଡ଼ା ଯଦି ଏ ଖଣ୍ଡିକ ନେବେ ତେବେ ମୋ ସ୍ତ୍ରୀ ଆଉ ଝିଅ ରହିବେ କେଉଁଠି । ମୋ ଝିଅ କଣ ଆପଣଙ୍କ ଝିଅ ନୁହେ ।

ଗୁମାସ୍ତା ଚଷମାଟାକୁ ତାଳୁ ଉପରକୁ ଟେକି ଠୋ ଠୋ ହସି କହିଲେ ଅଛ କଅଁକିଅ କଥା କହି ଶିଖିଛୁ । ଅରେ—ଯେତେବେଳେ ଟଙ୍କା ଠନ୍ ଠନ କରି ଗଣି ଆଣୁଥିଲୁ ସେତେବେଳେ ତ ଟଙ୍କା ଗଣ୍ଡା କେଉଁଠି ଗଛରେ ଫଳୁ ନଥିଲା, ଆଉ ଦେଲୁ ବେଳକୁ ଏମିତି କାନ୍ଦିବା ମରୁଛୁ । ପଢ଼ ଟଙ୍କା ଅଛି ତେବେ ଦେ, ନଚେତ ବର୍ତ୍ତମାନ ଏ ଘରୁ ଯା' ।

ଗୋପାଳ ଚନ୍ଦ୍ର ଦେଖିଲେ ଯେ ଏ ଗୁମାସ୍ତାଙ୍କର ହୃଦୟ ପାଷାଣ ଠାରୁ ଅଧିକ କଠିଣ । ସେଉଠୁ ଅଣ୍ଟାରୁ ପଚିଶଟି ଟଙ୍କା ବାହାର କରି କହିଲେ । ଏଇ ନିଅନ୍ତୁ । ଯାହା କିଛି ଆଉ ବାକିଥିଲା, ବିକି ଭାଙ୍ଗି ଏତକି ରଖିଛି । ବାକି ଟଙ୍କା ଦି'ମାସ ପରେ ଦେବି—ଆଜ୍ଞା ।

ଗୁମାସ୍ତା ଟିକିଏ କଣ ଭାବିଲେ ଦଣ୍ଡେ ରହି କହିଲେ—ଆଛା ହଉ, ଦସ୍ତାବିଜ୍ ଲେଖି ଦେଲୁ, ଟଙ୍କା ଦି'ମାସ ଭିତରେ ଦେବୁ-ନଇଲେ ଘର ପୁଣି କୋରକ ହେବ । ତା' ପରେ ନିଜ ପାଉଣା, ପିଅଦା ମିଅଦ କାଟି ବାକି ଅସୁଲ ପକାଇଲେ, ଟଙ୍କା ଛବିଶଟି ।

ଟେଷାଟି

# ଗୁରି

ଜମିଦାରଙ୍କ ଶୋଇବା କୋଠରୀଟି ବେଶ ସାଜସଜା । ଟେବୁଲ ଉପରେ ବୁଇସ୍କି ମଦ ବୋତଲ । ଗ୍ଲାସ ଠିକିଏ ବେଶି ହେବାରୁ ନାଚ ବାଲୀ ମାନେ ଚାଲି ଯାଇଛନ୍ତି, କିନ୍ତୁ ସୁନ୍ଦର ୨ ବାଦ୍ୟ ଯନ୍ତ୍ର ଗୁଡ଼ିକ ଯିଏ ଯେଉଁଠି ଥିଏ ସେଇଠି ପଡ଼ିଛି । ଘରର ଗୋଟିଏ କୋଣରେ ଝାଲ୍‌ଅଟା ଦିକ୍ ଦିକ ଜଳୁଛି । ଜମିଦାର ଆରାମ ଚଉକି ଉପରେ ବସି ଢୁଲାଉଛନ୍ତି ।

ଏହି ସମୟରେ ଗୁମାସ୍ତା ତାଙ୍କ ପାଖରେ ଯାଇ ଠିଆ ହେଲେ, ପାଦର ଖସ ଖସ ଶବ୍ଦ ଶୁଣି ଜମିଦାର ଆଖି ମେଲି ଦେଖିଲେ ତାଙ୍କର ଅନ୍ତରଙ୍ଗ—ବିଳାସର ସାମଗ୍ରୀ ଯୋଗାଇବାର କର୍ତ୍ତା-ହର ଗୁମାସ୍ତା ।

ଜମିଦାର ସିଧା ହୋଇ ବସି ପଡ଼ି ମୃଦୁ ହସି କହିଲେ—ଖବର କଣ !

ସତ

ଗୁମାସ୍ତା ଭୟ ଆନନ୍ଦ ମିଶା ଭଙ୍ଗିରେ ତାଙ୍କ ପାଖକୁ ଘୁଞ୍ଚି ଯାଇ ଚୁପ ଚୁପ କରି କେତେ କଣ କହିଲେ । ତା' ପରେ ଜମିଦାରଙ୍କ ମୁହଁରେ ହାସ୍ୟ ରେଖା ଫୁଟି ଉଠିଲା । ଗୁମାସ୍ତାଙ୍କ ପିଠିରେ ଥାପ ମାରି କହିଲେ ବେଶ୍, ଚେଷ୍ଟା କର ।

—"ଆଜ୍ଞା, କେତେ ସମୟ, ହୁକୁମ ହେଲେ ଅଳ୍ପ ଘଣ୍ଟାକରେ କାମ ଫତେ । ତା' ବାପ ସଙ୍ଗରେ ଆପଣ ବନ୍ଧୁ ବାନ୍ଧବ ଭଳି କଥା ବାର୍ତ୍ତା କରନ୍ତୁ । ଉଷା ବାଇତ ଆମର ବେଶ ପାରଙ୍ଗମ । ଖଣ୍ଡେ ଏବାର ହେଲେ ସବୁ ହେଲା । ଜମିଦାର ଆଜି ଗ୍ଲାସେ ମଦ ଢାଳୁ ଢାଳୁ କହିଲେ, ଠିକ କଥା, ବେଶ ବେଶ ।

\+ \+ \+ \+

ବର୍ଷା ହୋଇ ଗୁଡ଼ି ଯାଇ ଥାଏ । ସଞ୍ଜ ହେବାକୁ ଦ'ଘଡ଼ି ବାକି । ରସ୍ତା ଘାଟ କାଦୁଅ ପିଚ୍ ପିଚ୍ । ଗୋପାଳଚନ୍ଦ୍ର ଘର ପିଣ୍ଡାରେ ବସି ପୋଥି ପଢୁଥାନ୍ତି । ଏହି ସମୟରେ ଦାଣ୍ଡରେ କିଏ ଡାକିଲା—ପଟ୍ଟନାୟକ ଅଛ ହୋ—

ଗୋପାଳ ଚନ୍ଦ୍ର ପୋଥିରେ ଡୋର ଗୁଡ଼ାଇ ଦେଇ ଦାଣ୍ଡକୁ ଆସିଲେ । ସେହି ଗୁମାସ୍ତା । ତାଙ୍କର ଛାତି ଥରି ଉଠିଲା କିନ୍ତୁ ଗୁମାସ୍ତାଙ୍କୁ ହସ ହସ ମୁହଁରେ ଦେଖି ମନରେ ଟିକିଏ ସାନ୍ତ୍ୱନା ପାଇଲେ । ଘର ଅଗଣାକୁ ଯାଇଁ ମସିଣା ଖଣ୍ଡିଏ ଆଣି ପକାଇ ଦେଲେ । ତା'ପରେ ହାତ ଯୋଡ଼ି କହିଲେ—ଆଜ୍ଞା ବସନ୍ତୁ । ତାଙ୍କ ପାଟିରୁ କଥା ନ ସରୁଣୁ ଗୁମାସ୍ତା କହିଲେ—ଏଡେ଼ କଥା ନା, ବୟୋବୃଦ୍ଧ ଆପଣ, ଆଗେ ବସନ୍ତୁ ।

—କୁଆଡେ଼ ଆସିଲେ ବାବୁ,

—ହଁ, ହଁ, ତୁମର ଆଜ୍ଞେ, ଅଛ କୁଆଡେ଼ !

—ମୁଁ ପରା କହିଥିଲି, ଆଉ ଦୁଇଟା ମାସ ଘୁଞ୍ଚାଇବାକୁ !

—ନା, ନା, ସେ କଥା ନୁହେଁ । ମୁଁ ସବୁ ଫଏସଲ କରି ଦେବି;
ଜମିଦାରଙ୍କୁ କହୁଛି — ଯେତେ ହେଲେ ତମେ ଆମର ବନ୍ଧୁ ବାନ୍ଧବ ।
ଆମ ବାପା ତମ ବାପାଙ୍କର ଗୋଟାଏ କଥା ଥିଲା । ଦୁହେଁ ଦୁହିଁଙ୍କୁ ନ
ଦେଖିଲେ ବଣା ହେଉଥିଲେ । ଆଜି ସିନା ଇମିତି ହେଲା । ହଁ
ପଚନାପଲ ମୁଁ କଣ କହୁଥିଲି କି, ସେ ବିଷୟରେ ଜମିଦାରଙ୍କୁ କହୁଛି,
କାଳେ ଥରେ ଗଲେ ସବୁ ଫଏସଲା ହୋଇଯାନ୍ତା । କାଲି ଜମିଦାର
ବାହାର ଯିବେ, ଅଁ ଭ୍ଲ ଦିନକ ସମସ୍ତ । ଯ.ଅ, ଲୁଗାଟା ପିନ୍ଧି ଆସ,
ଫଏସଲା ସତ୍ତୁ ହୋଇ ଯିବ ।

ଯାହାର ମନ ସରଳ, ଯିଏ ସତ୍ୟ ଉପରେ ଧର୍ମ ଉପରେ ନିର୍ଭର
କରିବନ କାଟେ ସେ ଛନ୍ଦ କପଟ ଯାଣି ବ ବା କିଅଡ଼ୁ । ଗୋପାଳ ଚନ୍ଦ୍ର
କିଛି ବୁଝି ପାରିଲେ ନାହିଁ, ଘର ଆଡ଼କୁ ଲୁଗା ପଟା ପିନ୍ଧିବାକୁ ଗଲେ ।
ପ୍ରତିମା ଝିଡ଼କିରେ ଗୁହୁଁଥାଏ ।

କମଳ ଗାଁ ଛଡ଼ି ଗଲା ଦିନୁ ପ୍ରତିମା ସବୁବେଳେ ଝରକା ପାଖରେ ବସି
ଦୂରକୁ ଗୃହେଁ । କେତେବେଳେ ତା' ଅଜଣାତରେ ଆଖିରୁ ଲୁହ ଝରେ କାନ୍ଦୁ
ସେ ଜାଣି ପାରେ ନା ।

× + ×

ସେ ଦିନ ଗୋପାଳଚନ୍ଦ୍ରଙ୍କ ସହିତ ଜମିଦାର ଯେଉଁ ବ୍ୟବହାର କଲେ
ସେଥିରେ ସେ ଆଶ୍ଚର୍ଯ୍ୟ ହୋଇ ଗଲେ । ଠିକ ସଙ୍ଗୀପରି ବ୍ୟବହାର । କଥା
କହୁ କହୁ ଜମିଦାର କହିଲେ, ଝଙ୍କାଡ ଛଡ଼ି ଦିଅଗଲା, ତମକୁ ଆଜିଠାରୁ ମୁଁ
ବନ୍ଧୁଭାବରେ ଗ୍ରହଣ କଲି । ଆଜି ଘରକୁ ଯାଅନା, ଠାକୁର ଘରେ ଆଜି
ମାନସିକ ଅଛି, ତମ ଝିଅକୁ ମଧ୍ୟ ପ୍ରସାଦ ପାଇବା ପାଇଁ ମୁଁ ନେଇ ଆସୁଛି ।
ସକାଳେ ଘରକୁ ଯିବେ ।

ଏକଥା ଶୁଣି ଗୋପାଳଚନ୍ଦ୍ରଙ୍କ ଛାତିଟା ଦମ ଦମ ହୋଇ ପଡ଼ିଲା ।
ଏଭଳି ବ୍ୟବହାର, ମୋ ଝିଅ ଏଠାକୁ କାହିଁକି ଆସି... ! ... ... କେତେ

ଭଲ ମନ୍ଦ ଶଙ୍କାରେ ତାଙ୍କ ମନ ଆନ୍ଦୋଳିତ ହେଲା, କିନ୍ତୁ କିଛି କହି ପାରିଲେ ନାହିଁ ।

+ + +

ସଞ୍ଜବତୀ ଲଗିଲା । ପାଖ ଆଖ ଗାଁ ଠାକୁର ଘରୁ ଝାଞ୍ଜ ମୃଦଙ୍ଗ ଭଜନ ପଡ଼ିଲା । ପ୍ରତିମା ପଣତ କାନି ତଳେ ସଞ୍ଜବତୀ ଲଗାଇ ଚଉଁରା ପାଖକୁ ଆସିଲା । ତୁଳସୀ ମୂଳେ ବତୀଟି ଥୋଇ କାନିକୁ ବେକରେ ଓଲଟାଇ ପକାଇ ଦଣ୍ଡବତ କଲା । ପୁଣି ଉଠି ହାତ ଯୋଡ଼ି ଗୁଣୁ ଗୁଣୁ ହୋଇ ତା'ର କମଳ ଭାଇର ଶୁଭ ମନାସୁଛି, ଠିକ୍ ଏହି ସମୟରେ କାର କଅଁଳ ହାତ ଅନୁଭବ କରି ଚମକି ଉଠି ପଛକୁ ଚାହିଁଲା । ଜଣେ ଚଉଦ ପନ୍ଦରବରଷ ମାଇପିଟିଏ, ସୁନ୍ଦର ଦେହ । ସୁନା ଗହଣାରେ ସାରା ଅଙ୍ଗ ପୂରି ରହିଛି । ପ୍ରତିମା ତାକୁ ଅବାକ କାବା ହୋଇ ଚାହିଁଲା. ମାଇପିଟି ହସହସ ମୁହଁରେ କହିଲା, ଅଇହୁଲଇଣ୍ଡି ହୋଇଥା' । ଠାକୁରଙ୍କୁ ଡାକ, ଭଲ ବରଟିଏ ପାଇବୁ ।

ପ୍ରତିମା ଚିହ୍ନି ପାରିଲା ନାହିଁ । ମୁଣ୍ଡରେ ଲୁଗା ଦେଇ ତଳକୁ ମୁହଁ ପୋତି କହିଲା—ମୁଁ ତ ଚିହ୍ନି ପାରୁନ ।

—ନା' ଲୋ ଝିଅ, ଚିହ୍ନିବୁ କେମିତି, ମୁଁ ତ କେବେ ଏଠା ପାଖକୁ ଆସିନାହିଁ, କିନ୍ତୁ ସବୁ କଥା ଜାଣେ । ଜମିଦାରଙ୍କ ଘରୁ ଆସିଛି, ଜମିଦାର ତମ ଉପରେ ଭାରି ଖୁସି । ତୋ ବାପା ଯେଉଁଠି ଅଛନ୍ତି, ଆଜି ଠାକୁର ଘରେ ମାନସିକ । ତୁ ପ୍ରସାଦ ଚାଖିବାକୁ ଯିବୁ । ଜମିଦାରଙ୍କର ତୁ ଆଜିଠାରୁ ଧରମ ଝିଅ । ତୋତେ ଯିବା ପାଇଁ କହିଛନ୍ତି ।

ପ୍ରତିମା ଧନ୍ଦେ ପଡ଼ିଗଲା । ତା' ମନଟି କାହିଁକି ଗୋଟାଏ ଅଜଣା ଭୟରେ ଥରି ଉଠିଲା । ସେ ମନେମନେ ଖାଲି ଭାବିଲା—ଯେଉଁ ଜମିଦାର ନଜରରୁ ପୁଅ ଝିଅ ଏଠିକୁ ଆସୁଥିଲେ ବୋଲି ଆମର ସର୍ବନାଶ କରିଛି, ସେ ପୁଣି ବଦଳିଲା କେମିତି । ସେ ତ ମଦ୍ୟପୀ ବୋଲି କମଳ ଭାଇ ଠାରୁ ଶୁଣିଛି । କେତେ ବାଳିକାଙ୍କ ଉତ୍ତପ୍ତ ଅଶ୍ରୁରେ ଆକାଶ ପବନ ପୂରିଛି, ଆଉ ମୁଁ ସେଠିକି ଯିବି କାହିଁକି, ଛଡ଼ାଯାଉ ନୁହେଁ ତ । ପର ମୁହୂର୍ତ୍ତରେ ଭାବିଲା ନା ନା, ମୋର ବାପା

ଅଛନ୍ତି ଯେ । ଇମିଧ କେତେ କଣ ଖାଉଛନ୍ତି, ପୁଣି ସ୍ତ୍ରୀ ଲୋକଟି ହସି ହସି କହିଲା—କଣ ଟିଏ ଖାଉଛୁ । ଘର ଅଡ଼କୁ ଚାଲେ । ବୋଉ ଭଲ ଅଛନ୍ତି ।

ପ୍ରତିମା ପଛେ ଚାଲିଚାଲି ଘର ଅଡ଼କୁ ଗଲା । ସ୍ତ୍ରୀ ଲୋକଟି ପ୍ରତିମା ବୋଉ ସଙ୍ଗରେ କଥାବାର୍ତ୍ତା ହେଉଛି ହେଉ—ପ୍ରତିମା ଅନ୍ଧାର ଘରଟିରେ ଠାକୁରଙ୍କୁ ପାର୍ଥନା କରି ଦଣ୍ଡବତ କଲା, ଭଗବାନ ତମ ଇଚ୍ଛା କଣ ମୁଁ ଜାଣେ ନା । ତମେ ମୋର ସବୁ, ମତେ ଉଦ୍ଧାର କର । ମୋ ଉପରେ ମୋ କମଳ ଭାଇ ଉପରେ ଯେପରି ବିପଦ ନ ପଡ଼େ ସେଥି ପାଇଁ ତମେ ସହା ।

ତା'ପରେ ସ୍ତ୍ରୀ ଲୋକଟି ପ୍ରତିମା ବୋଉ ସଙ୍ଗେ କଥା ବାର୍ତ୍ତା ହୋଇ ସକାଳରେ ପ୍ରତିମାକୁ ନେଇ ଚାଲିଗଲା ।

+ + + +

ଯେ ଦିନ ପିତା କନ୍ୟା ଦୁହେଁ ଜମିଦାରଙ୍କ ଘରେ ଅଛନ୍ତି ହେଲେ ସତ; କିନ୍ତୁ ସେମାନଙ୍କ ମନ ଗୋଟାଏ ଅଜଣା ଆଶଙ୍କାରେ ଥରି ଉଠିଲା । ପ୍ରତିମା ତାର ବାପାଙ୍କ ନିକଟରେ ଥିଲେ କିଛି ଚିନ୍ତା ନଥିଲା, କିନ୍ତୁ ଗୋପାଳ ଚନ୍ଦ୍ରଙ୍କୁ ଦାଣ୍ଡଘରେ, ପ୍ରତିମାକୁ ଘର ଭିତରେ ରଖା ଯିବାରୁ ପ୍ରତିମା ମନରେ ଯେତିକି ସନ୍ଦେହ ହେଲା, ତାର ବାପାଙ୍କ ମନରେ ମଧ୍ୟ ତା ଠାରୁ ବେଶି ।

ରାତି ଦୁଇଟା । ଚାରି ଆଡ଼େ ଶୁନଶାନ । ଦଣ୍ଡେ ଦଣ୍ଡେ ଝିଙ୍କାରୀଙ୍କ । ନାତ୍ରୁଦତା ରାଜ୍ୟର ପହରା ଦେଲା ଭଳି ଗର୍ଜି ଉଠୁଥାଏ । କେତେବେଳେ ବା ବାଦୁଡ଼ି ଏ ଗଛରୁ ସେ ଗଛକୁ ଫଡ଼ ଫଡ଼ ହୋଇ ଉଡ଼ିଗଲା ବେଳେ ପାହ୍ୟା ଶବ୍ଦ ହେଉଥିଲା ସେତିକି । ଜମିଦାରଙ୍କ ଆଖିକୁ ନିଦ ନାହିଁ । ଗୋଟାଏ ଦୁଃଖ ଆଶାରେ ତାଙ୍କ ମନ ପୂରି ଉଠୁଛି । ସେ ଆଉ ସମ୍ଭାଳି ପାରିଲେ ନାହିଁ । ଦାଣ୍ଡ ବାହାର ପୁଣି ଥରେ ବୁଲି ଆସିଲେ । ଆରାମ ଚୌକି ଉପରେ ବସି ମଦ ଗ୍ଲାସେ ପିଇ ସିଗାରେଟଟା ଲଗାଇଲେ । ତା'ପରେ ଚାଲି ଚାଲି ପ୍ରତିମା ଯେଉଁ କୋଠରିରେ ଶୋଇ ଥିଲା, ସେହି କୋଠରିକୁ ଗଲେ । ପ୍ରତିମା ଖଟରେ ଗୋଟାଏ

ଏକୋଇଶ

ଛଟକୁ ତାଙ୍କ କୁଙ୍କ ହୋଇ ଶୋଇ ଥାଏ । ତା' ମୁହଁଟି ଗୋଟାଏ ଅଙ୍ଗଣା ଭୟରେ ମଉଳି ଯାଇଥାଏ ।

ଜମିଦାର ଆଗେ ଯାଇଁ ତା' ପାଖରେ ଦଣ୍ଡେ ଠିଆ ହେଲେ । ତା'ପରେ ହାତ ଦୁଇଟାକୁ ତା'ଉପରେ ପକାଇ ଡାକୁ ଯାଉଛନ୍ତି-ପ୍ରତିମା ଗୋଟାଏ କଣ ସ୍ୱପ୍ନ ଦେଖି ବଳି ବଳେଇ ଉଠିଲା-କମଳ ଭାଇ !

ଜମିଦାର ହସି ହସି କହିଲେ, କେଉଁ—କମଳ ଭାଇ ? କମଳ ଭାଇ ଦୂରରେ, ତୋର ପାଇଁ ପଠାଇଛି ତାକୁ ଦୂରକୁ । ମୁଁ ତ ତୋପାଖରେ ଅଛି ଆଉ ଚିନ୍ତା କଣ ?

ପ୍ରତିମା ଖଟ ଉପରୁ ହୁଡ଼ ଛଳା ଡେଇଁ ପଡ଼ି ଦଉଡ଼ି ଗଲା ଗୋଟାଏ କଣକୁ । ଛାତି ଦପ୍‌ଦପ୍ ହୋଇ ପଡୁଥାଏ, ସେ ବଡ଼ ଆକୁଳ ବିକଳ ହୋଇ କହିଲା—ଏ କଣ, ଆପଣ ଏଠିପେ, ଚାଲି ଯାନ୍ତୁ—ଉଁ—ଏ କଣ ?

ଜମିଦାର—ମୁରୁକି ହସା ମାରି କହିଲେ—ହିଁ ରୁ ପିଲାଟୋକ, କିଛି ଜାଣିନୁ, ଆ-ମା ପାଖକୁ—ଆ । କାଲି ସଞ୍ଜ ପାହିଲେ ତୋତେ କେତେ ସୁନା ଗହଣା ଦେବି, ତମେ ବଡ଼ ଲୋକ ହୋଇଯିବ, ଆ—ଆ— କହି ତା' ପାଖକୁ ଗଲେ ।

ପ୍ରତିମା ଦେଖିଲା ଯେ ଏ ଦୁଷ୍ଟ ହାତରୁ ଆଉ ଉଦ୍ଧାର ପାଇବାର ଉପାୟ ନାହିଁ । ସେ କଇଁ କଇଁ ହୋଇ କାନ୍ଦି ଉଠି ତାଙ୍କ ଗୋଡକୁ ଦି' ହାତରେ ଧରି କହିଲା—କ୍ଷମା କରନ୍ତୁ, ଆପଣ ମୋର ପିତା ସମାନ, ମୋ ଉପରେ ଅତ୍ୟାଚାର କରି କଣ ଭଲ କାମ କରିବେ । ମୁଁ ଆପଣଙ୍କ ଝିଅ । ମୋତେ ଛାଡ଼ିଦିଅ, ମୁଁ ଚାଲି ଯାଏ ।

—ତୁ କଣ ପାଗଳୀ ଟା ନା' କଣ, ଏଇ କଥା ପାଇଁ ମନା କରୁଛୁ ! କହି ତାର ହାତକୁ ଦୁଇ ହାତରେ ଉଠାଇ ଆଣିଲା ବେଳକୁ ପ୍ରତିମା ରାଗି ଉଠି ହାତକୁ ଝିଙ୍କାଡ଼ି ଦେଲା । ଜମିଦାର ପଛକୁ ଟିକିଏ ଘୁଞ୍ଚିଯାଇଁ ଟିକିଏ ରାଗିଗଲା ଭଳି କହିଲେ ମୋତେ ଏପରି ବାଧା ଦେଉଛୁନା, ମୁଁ ପଲ୍ଲୀ-ଜମିଦାର ।

—ପ୍ରତିମା ଏଥର ରାଗିଉଠିଲା, ସବୁ ସାହସ ଏକଜ କରି କହିଲା—ହଁ ଜାଣେ, ଅପଣ ଜମିଦାର ବୋଲି ଜମିଦାର ବୋଲି କଣ ଏମିତି ଅତ୍ୟାଚାର କରିବାର ଅପଣଙ୍କର କ୍ଷମତା ଅଛି !

—ଜମିଦାର ଟିକିଏ ରାଗି ଉଠି କହିଲେ—ତୋ କଥା ଶୁଣିବାକୁ ଚାହେଁନା,' ମୋର ବେଶ କ୍ଷମତା ଅଛି, ମନା କଲେ ତମ ଅବସ୍ଥା କଣ ହେବ ଜାଣିଛୁ ଟିକି । ତମେ ମୋର ଟଙ୍କା ଧାରୁଛ, ପୁଣି ଅଛି ମୋ ଘରେ ତମେ ଦୁହେଁ ଚାକର ଅଛ । ଇଚ୍ଛା ପାଇଲେ ଚୋରି ମକଦ୍ଦମାରେ ତମକୁ ଜେଲ ଦେଇ ପାରେ । ସେ କଥା ଛାଡ଼ିଦେ, ଝିଅ ପିଲାଟି ପରି ପାଖକୁ ଆ । ସବୁ ଟଙ୍କା ଛାଡ଼ିଦେବି । ଏକାଠି ଉଠି ଅନନ୍ଦରେ ଘରକୁ ଚାଲିଯିବ, ତା' ନହେଲେ ଭାବନା ମୁଁ ସହଜରେ ଛାଡ଼ିଦେବି ନା ! ଆଶା କରୁଛି କମଳକୁ ପାଇବୁ, ତାହା କଦାପି ହେବ ନାହିଁ । ସେଥିପାଇଁ ତାକୁ ପଠାଇଛି ଦୂରକୁ, ତୁ ମୋର ବିଳାସର ସାମଗ୍ରୀ ହେବୁ । ତା କଥା ସ୍ୱପ୍ନରେ ଭାବେ ନା, ଆ—ଆ ।

ତାଙ୍କର ଏହି କଦର୍ଯ୍ୟ କଥାରେ ପ୍ରତିମାର ପ୍ରାଣ ଶ୍ରେମମୂଳ ଥାଉଁରି ଉଠିଲା । ସେ ଅତ୍ୟନ୍ତ ରାଗି ଉଠି କହିଲା—ଆଜି ଅପଣଙ୍କ ପ୍ରଲୋଭନ । ଜେଲ ଯାଇ ପାରେ, ଅଶେଷ କଷ୍ଟ ଗଞ୍ଜଣା ସହି ପାରେ କିନ୍ତୁ ଅପଣଙ୍କ ପରି ଅତ୍ୟାଚାରୀ—ହୃଦୟହୀନ କଥାରେ ମୁଁ ଭୁଲିବିନିହଁ । ମୋତେ ଛାଡ଼ିଦିଅ ମୁଁ ଚାଲି ଯାଏ । ଜମିଦାର ଏଥର ଉଦ୍ଧାନକ ରାଗି ଉଠି କହିଲେ—ମୁଁ ହୃଦୟ ହୀନ ନା ! ଦାନ୍ତ କଡ଼ମଡ଼ କରି ତାକୁ ଧରିବାକୁ ତା ପାଖକୁ ଦଉଡ଼ି ଗଲେ । ପ୍ରତିମା ଦେଖିଲା ଅଉ ରକ୍ଷା ନାହିଁ, ସେ ତାର ସବୁ ବଳ ସାହସକୁ ଏକାଠି କରି ଖୁବ ଜୋରରେ ଠେଲି ଦେଲା ।

ସେହି ଅନ୍ଧାରରେ ଜମିଦାର ଗୋଟାଏ କାଚ ଅଲମାରି ଉପରେ କଚଡ଼ା ହୋଇ ପଡ଼ିଲେ । କାଚ ଖଣ୍ଡେ ମୁଣ୍ଡରେ ପଶି ରକ୍ତ ଧାର ଧାର ହୋଇ ବୋହିଲା । ପ୍ରତିମା ଅଉ ଡେରି ନକରି ଝରକା ବାଟେ ଦଉଡ଼ି ଲୋଉଲା, ତାର ବାପା ଯେଉଁ କୋଠରିରେ ଥିଲେ ।

× × ×

—ବାପା ! ବାପା !

ତେଇଶ

—ଗୋପାଳ ଚନ୍ଦ୍ରଙ୍କ ଅଖିରେ ସେତେବେଳେ ଯାଏ ନିଦ ଅ ନଥିଲା, ସେ ପ୍ରତିମା କଥା ଭାବୁଥିଲେ, ପ୍ରତିମାର ଡାକରେ ଚମକି ପଡି କହିଲେ କଣ—ମା !

—ବାପା, ବାପ, ମୁଁ ସର୍ବନାଶ କରିଛି ।

—କାହାର ମା ?

—ଜମିଦାରର !

—ଜମିଦାରର ?

—ହଁ ବାବା, ଅତ୍ୟାଚାର ଗର୍ବ ଭଏ କାହାର ଦମ୍ଭ କହିବ । ମଣିଷ ଜନମ ହୋଇଛି ଥରେ ହେଲେ ମରିବା ପାଇଁ । ମୁଁ ତା କରିଛି । ନିଜର ଦୁଃଖକଷ୍ଟକୁ ବରଣ କରି ନେଇଛି, ବାକି ତାହାଲେ ହେବ ମୋ ଭାଗ୍ୟର ମୀମାଂସା ।

ଗୋପାଳ ଚନ୍ଦ୍ରଙ୍କ ଅଖିରୁ ଧାର ଧାର ହୋଇ ଲୁହ ବୋହି ଚାଲିଲା । ପ୍ରତିମା ମଧ୍ୟ ତାଙ୍କ କୋଳରେ ମୁହଁଟି ଲୁଚାଇ କଇଁ କଇଁ ହୋଇ କାନ୍ଦି-ବାକୁ ଲାଗିଲା

# ପାଞ୍ଚ

କ୍ଷଣକ ମଧ୍ୟରେ ଜମିଦାର ଘରେ ଚହଳ ପଡ଼ିଲା—ଭାଲୁ ପେଣ୍ଡି ହିଁ ଅଠା ତାଙ୍କ ଘରେ ଥିଲା—ସେ ବଡ଼ ବଦ୍‌ମାସ । ରାତିରେ ଜମିଦାରଙ୍କ ବାକ୍ସରୁ ବହୁ ମୂଲ୍ୟ ଜିନିଷ ନେଇ ଯାଉଥିଲା ବେଳେ ତାଙ୍କ ନିଦ ଭାଙ୍ଗି ଗଲା । ଜମିଦାର ତାଙ୍କୁ ଧରିବାକୁ ଗଲାରୁ ସେ ଖୁବ ଜୋରରେ ଠେଲି ଦେଇ ବହୁ ମୂଲ୍ୟ ଜିନିଷ ନେଇ ପଳାଇ ଯାଇଛି । ସଙ୍ଗେ ୨ ଚାରିଆଡ଼େ ଖୋଜା ପଡ଼ିଲା । ଥାନାରେ ଖବର ଦିଆଗଲା ।

ହଠାତ୍ ଜଣେ ଲୋକ ପ୍ରତିମାକୁ ଦାଣ୍ଡ ଝରକା ପାଖରେ ଦେଖି ଦଉଡ଼ିଯାଇ ମୁଣ୍ଡରେ ଦେଲା ପାହାରେ । ସେ ପାହାରକେ ମଲି ମଲି ହୋଇ ପ୍ରତିମା ତଳେ ପଡ଼ିଗଲା । ମୁଣ୍ଡ ଫାଟି ରକ୍ତରେ ତାର ଲୁଗା ପଠା ଓଦା ହୋଇଗଲା ।

ଗୋପାଳ ଚନ୍ଦ୍ର ସେଇ ଘରେ ମୁଣ୍ଡ ପିଟି ପିଟି—ତାଙ୍କର ମଧ୍ୟ ଚେତା ବୁଡ଼ିଲା ।

ତତ୍‌ପରେ ପ୍ରତିମାକୁ କେତେ ଜଣ ଲୋକ ଟେକି ଜମିଦାରଙ୍କ ଘରକୁ ନେଇ ଆସିଲେ । ପ୍ରତିମାର ଚେତା ନ ଥାଏ ।

ଠିକ ଦୁଇଦିନ ପରେ-ପ୍ରତିମା ଆଖି ମେଲି ଦେଖିଲା ତାକୁ ଦି' ଜଣ ଲୋକ ଧରି ଠିଆ ହୋଇ ଛନ୍ତି ଗୋଟାଏ ଯାଗାରେ । ସେଠି କଣ ବିଚାର ହେଉଥିଲା । ତାର ବାପା ହାତ ଯୋଡ଼ି ଲୁହ ଛଳ୨ ଆଖିରେ କଣ କହୁଥିଲେ ଜଣେ ଚୌକି ଉପରେ ବସି ଥିବା ବାବୁ ଆଗରେ । ତା ପରେ କଣ ହେଲା......ପୁଣି...କଣ କିଛି ଜଣା ନାହିଁ । ମୁଣ୍ଡର ଘୋର ପୀଡା ଯୋଗୁଁ ସେ ଅଳ୍ପ ସମୟ ମଧ୍ୟରେ ଅଚେତନ ହୋଇ ପଡ଼ିଥିଲା । ପୁଣି ଚେତା ହେଲାବେଳକୁ ଅନାଇ ଦେଖିଲା ଯେ—ଚାରି ପାଞ୍ଚଜଣ ନାଲି ପଗଡ଼ିଆ ତାକୁ ଓ ତାର ବାପାଙ୍କୁ ବାନ୍ଧି କେଉଁଠିକୁ ନେଉଛନ୍ତି । ଏ ସବୁ ତାକୁ ଲାଗୁଥାଏ ସପନପରି ।

ଏଥି ମଧ୍ୟରେ କେତେ ଦିନ ଯେ କଟି ଯାଇଛି ପ୍ରତିମାକୁ ଜମାରୁ ଜଣା ନାହିଁ । ଆଜି ତା'ର ପୀଡା କମି । ସେ ସବୁ ବେଳେ ମରିଗଲି ମରି ଗଲି ହେଉଛି, ଏତିକି ବେଳେ କିଏ ଗୋଟାଏ କହିଲା, ଚୁପ ପାଟି କରନା, ଶୋଇପଡ଼ ।

ପ୍ରତିମା ଚମକି ପଡ଼ି ଅନାଇ ଦେଲା, ଜଣେ କିଏ ମାଈଆ ପଞ୍ଜାବି ପିନ୍ଧି କାନରେ ଗୋଟାଏ ବନ୍ଧୁକ ପକାଇ ଠିଆ ହୋଇଛି, ବାପା ସେଠି ନାହାନ୍ତି । ପ୍ରତିମା ମନେକଲା ନିଶ୍ଚୟ ଏ ସେହି ଦୁଷ୍ଟ ଜମିଦାର ର ଘର । ବହୁ-କଷ୍ଟରେ ଚାରି ଆଡ଼କୁ ଅନାଇ ଦେଖିଲା—ସେ ଯେଉଁଠି ଶୋଇଥିଲା—ଅତି ଛୋଟ କୋଠରିଟିଏ । ଗୋଟିଏ ମାତ୍ର ଛୋଟ ଝରକା । ସେ ଯେଉଁଥିରେ ଶୋଇଥିଲା ଖଣ୍ଡେ ଛିଣ୍ଡା କତରା—ଆଉ ତା' ପାଖରେ ଖଣ୍ଡେ ଛୋଟ କମ୍ବଳ, ପିନ୍ଧିବା ଲୁଗା ଖଣ୍ଡିକ ମୋଟା ନେଳିଆ ମୋହର ମଧ୍ୟ । ବେକଟରେ ଝୁଲୁଛି ଖଣ୍ଡେ ଟିଣ—ସେଥିରେ କଣ ଲେଖା ହୋଇଛି । ଆଉ ତା' ମୁଣ୍ଡ ପାଖକୁ ଥୁଆ ହୋଇଛି ଦୁଇ ଖଣ୍ଡ ଲୁହାର କଡ଼େଇ ପରି ବାସନ । ଗୋଟାକରେ ପାଣି ଟୋପା, ଆଉ ଗୋଟାକରେ କଣ ଜାଉ ପରି । ସମ୍ଭବ ପାଗ ହେବ । ଏ ସବୁ ବଡ଼ ନୂଆ ୨ ଲାଗିଲା । ତାର ବାପା

କୋଉଁଠି—ଅଉ ସେ କୋଉଁଠି କଷ୍ଟ ବର୍ଣ୍ଣି ପାରିବ ନାହିଁ, କେବଳ ସେତିକି ବେଳେ ତାର ମନେ ପଡ଼ିଲା—ଜମିଦାରଙ୍କୁ ସେ ଯେଉଁ କଷ୍ଟ ଦେଇଛି—ତାର ପ୍ରତିଶୋଧ ସମ୍ଭବ ଏଇ।

କିଛିକ୍ଷଣ ପରେ ସେ କୋଠରୀକୁ କିଏ ଦୁ'ଜଣ ପୋଷାକ ପିନ୍ଧି ଆସିଲେ। ହାତରେ ଦୁ' ଟା ରବର୍ ନଳୀ, ତା'ର ଛାତିଉପରେ ସ୍ତିକଳ ଠାକୁ ଦେଇ କଣ ଦେଖିଲେ— ଚାଲି ଗଲେ। ପୁଣି ଠିକ୍ ଏ ଛଅ ଦୁ' ଜଣ ଗୋଟାଏ ଷ୍ଟେଠ ଅଣ ଓସାରିଆ ଗାଡ଼ି ଧରି ସେଠି ପହଞ୍ଚିଲେ। ତାକୁ ତା' ଉପରେ ଶୁଆଇ କେଉଁଠିକୁ ନେଇ ଗଲେ।

ବହୁତ କ୍ଷଣ ପରେ ପୁଣି ଯେତେବେଳେ ପ୍ରତିମାର ଚେତା ଆସିଲା, ସେ ଦେଖିଲା ଗୋଟାଏ ଭଲ ଖଟ ଉପରେ ଶୋଇଛି। ତା' ଦେହରେ ଆଉ ସେ ଖଦ ଲୁଗା ନାହିଁ। ଖଦଡ଼ ଖୁବ ଧୋବ ଫର ଫର ଭଲ ଲୁଗା। ତା' ମୁଣ୍ଡ ଉପରେ ଗୋଟାଏ ଥାଳଆରେ ନେଡ଼ାଏ ଅଙ୍ଗୁର ଓ ଦୁଇ ତିନିଟା ଲିମ୍ବୁ। ତା' ପାଖକୁ ଲାଗି ଶିଶିଏ ଔଷଧ ଓ ମେଞ୍ଚାଏ ତୁଳା। ଗୋଡ଼ ପାଖରେ ଷ୍ଟୋପଟା ଖୁବ ଗର୍ଜୁଛି ଆଉ ପାଣି ଗୁଡାକ ଫୁଟୁଛି ଗବ ଗବ ହୋଇ।

ପ୍ରତିମା ଏ ସବୁ ଦେଖି ବଡ଼ ବିସ୍ମିତ ହେଲା—ଏ କଣ ସେହି ଜମିଦାର ଘର। ମୋ ଆଗରେ କଣ ଏ ସବୁ ପ୍ରଲୋଭନ ଥୁଆ ହୋଇଛି ତାର କୂଟ ଚକ୍ରରେ।

ଠିକ ଏହି ସମୟରେ ଜଣେ ୨୨। ୨୩ ବର୍ଷର ସ୍ତ୍ରୀ ଲୋକ ଯୋଡ଼ା ମଚ ୨ ଧରି ସେଠିକୁ ଆସିଲେ। ବଡ଼ ଶାନ୍ତିରେ ପ୍ରତିମାକୁ ବସାଇବାକୁ ଲାଗିଲେ।

ପ୍ରତିମା ମନରେ କେତେ କଣ ଭାବି କହିଲା—ମାଉସି ତମେ କିଏ ? ମୋର କାହିଁକି ଏତେ ଉପକାର କରୁଛ।

—"ମୁଁ ଏ ଜେଲରେ ନର୍ସ କାମ କରେ, ସମସ୍ତଙ୍କର ସେବା ଶୁଶ୍ରୂଷା କରିବା ମୋର କାମ।

—"ମାଉସି ତମେତ ଜେଲରେ କାମ କର, ଏଠି କାହିଁକି ମୋର ସେବା କରୁଛ ?

—ଶୋଇ ପଡ଼, ତୋର ଦେହ ଭଲ ନାହିଁ । କଣ ଗୁଡ଼ା ପାଗଳ ପରି ଗପି ଯାଉଚୁ । ଏ ପରି କେଲ, ତୁ କଣ ବୋଲି ଭାବୁଚୁ ?

—କଣ କେଲ । ମାଉସୀ, ମାଉସୀ ମୁଁ କଣ କେଲରେ, ବାପା କାହାନ୍ତି ? କମଳ ଭାଇ କାହାନ୍ତି ?

ନର୍ସ ତା'ର ଏ ସବୁ କଥା ଶୁଣି ବଡ଼ ବିସ୍ମିତ ହେଲା । ତା'ରସବୁ କଥା ଗୁଡ଼ାକ ଯେପରି ସେ ଶୁଣିବାକୁ ଇଚ୍ଛା କରି କହିଲା—କମଳ କିଏ ?

—ତମ ନା' କଣ ?

—ହିଁ, କହିବି, କିନ୍ତୁ ମାଉସୀ ମୁଁ କେଲରେ କାହିଁକି ? ମୁଁ ତ କାହାର କିଛି ଦୋଷ କରିନି !

—ତୁ କଣ କିଛି ବୁଝି ପାରୁନୁ । ତୁ ପରା ସ୍ନେହ କରୁଚୁ ।

—ପ୍ରତିମା କାହାର ?

"ସେଇ କମିଦାର କିହ୍ନ ମୂଲ୍ୟର ଛନସ ।

—ହଁ, ବୁଝି ପାରିଲି, ମୁଁ ସ୍ନେହଣୀ । ଅଛା ମାଉସୀ—କହିପାରିବ ବାପା କେଉଁଠି ଅଛନ୍ତି ।

—ନା, ମୁଁ ତ କହି ପାରିବିନି, ତେବେ—ହଁ, ଆଜି ଅସିଲ ବେଳେ ପ୍ରାୟ ୫୦ ବର୍ଷର ଜଣେ ବୁଢ଼ା ଘଣ୍ଟା ଦେଇ ଥିଲେ । ମୋତେ ଦେଖି କାନ୍ଦି କାନ୍ଦି କାହିଁକି କହିଲେ—ମା' ମୋ ଝିଅ ତମକୁ ଲଗିଲା, ମୁଁ ତ କିଛି ବୁଝି ପାରିଲି ନାହିଁ—ଭାବିଲି ଏଠା ପାଗଳ ହୋଇ ଗଲେଣି ; ତା' ହେଲେ ସେ କଣ ତମ ବାପା ?

—ପ୍ରତିମା ଆଖିରୁ ଲୁହ ଧାର ଧାର ହୋଇ ବୋହିଗଲା—ତାର ସେତେବେଳକୁ କୌଣସି କଥା କହିବାକୁ ଶକ୍ତି ନଥିଲା ଯମାରୁ । ସେ ଓଠ ଥର ଥର କରି କହିଲା—ହଁ ସେ ମୋ ବାପା, ଘଣ୍ଟା ଦେଇ ଛନ୍ତି !

ପ୍ରତିମାର କାନ୍ଦ ଦେଖି; ନର୍ସର ଆଖିରୁ ସେତେବେଳକୁ କେତେ ଧାର ଲୁହ ଝରିଗଲାଣି । ସେ ନିଜ କାନରେ ପ୍ରତିମାର ଲୁହ ପୋଛି ଦେଇ କହିଲା—ଛି କାନ୍ଦନା । ଆଉ ମୋତେ ମାଉସୀ ବୋଲି

ଡାକିବୁନୁ । ଆମ ଭିତରେ ଦି' ତିନି ବରଷ ବଡ ସାନ । ତୁ ମୋର ଅଙ୍କଠାରୁ ସଙ୍ଗୀ ହେଲୁ । ଆଉ କହିଲୁ ତୁ ଏମିତି କାହିଁକି ହେଉଛୁ, ତୁ ତ ଟ୍ରେଷ କରି ଏଠାକୁ ଆସିଲୁ ଭଳି ଜଣା ପଡ଼ୁନୁ । ତୋ ନା' କଣ ଅଗ ଛନ୍ଦୁ ?

—"ପ୍ରତିମା !

—"ପ୍ରତିମା, ବେଶ ନା' ତ !

—"ତମର କଣ କେହି ନାହାନ୍ତି ?

—"ସବୁ ଅଛନ୍ତି,—ମୋର କମଲ ଭାଇ ।

ନର୍ସ ଆଉ କଣ କହିବାକୁ ଯାଉ ଥିଲା—ଡାକ୍ତର ସେଆଡ଼କୁ ଆସି-ବାରୁ ତର ତର ହୋଇ ଗରମ ପାଣିରେ ପ୍ରତିମାର ମୁଣ୍ଡ ଧୋଇ ବ୍ୟାଣ୍ଡେଜ ବାନ୍ଧି କହିଲା—ପ୍ରତିମା କାନ୍ଦନା, ମୁଁ ପୁଣି କାଲି ଆସିବି ।

ପ୍ରତିମା ଦିନରେ କେତେ ସମୟ ମାତ୍ର ନର୍ସ ସଙ୍ଗରେ କଥାବାର୍ତ୍ତା ହୋଇ ଯାଏ। ଟିକିଏ ମନ ପରିବର୍ତ୍ତନ କରେ, କିନ୍ତୁ—ଯେତେବେଳେ ସନ୍ଧ୍ୟା ମାଡ଼ି ଆସେ, ରଜନୀ ରାଣୀର କାଳିମ ପରଶରେ ଗଛ ପତ୍ର ଗୁଡ଼ା ଅଦୃଶ୍ୟ ଲୁଚି ଯାନ୍ତି, ବାହାରର ଗହଳ ଚହଳ ଆଉ ଜେଲର ଦୃଢ଼ ପ୍ରାଚୀର ଦେଇ ଭିତରକୁ ପଶି ପାରେନା, ସେତେବେଳେ ପ୍ରତିମା ବଡ଼ କାତର ହୋଇ ପଡ଼େ । ସେ ବିଛଣାରେ ଯାଇଁ ଶୁଏ, କିନ୍ତୁ ତା ଆଖିକୁ ଆଉ ନିଦ ଆସେନା । ସେ ଭାବେ ତା' କମଲ ଭାଇ କଥା—ବୁଢ଼ା ବାପା କଥା—ମା' କଥା । ସାରା ରାତି ଆଖିରୁ ଲୁହ ଗଡ଼େ—ଟିକିଏ ତନ୍ଦ୍ରା ହୁଏ, ଥରକୁଥର ତାର କମଲ ଭାଇ କଥା ମନେ ପଡେ କିନ୍ତୁ ଉପାୟ···

ପ୍ରତିମା ଏକାବେଳକେ ଭଲ ହୋଇ ଗଲା । ସେ ଭାବି ଥିଲା ଏଥର ସେ ଆଉ କେଉଁଠି ଭଲ ଯାଗାକୁ ଯିବ—ତା ବାପାଙ୍କୁ ଦେଖିବ—କିନ୍ତୁ ଦିନେ ସକାଳେ-ପ୍ରତିମା ବିଛଣାରୁ ଉଠି ନାହିଁ, ଦୁ'ଜଣ ନାଲି ପଗଡ଼ିଆ ତାକୁ ଗାଳି ଦେଇ କହିଲେ—କବାଟ ଖୋଲ । ପ୍ରତିମା ହୃଷ୍ଟ ମନ ଉଠି କବାଟ ଖୋଲି ଦେଲା । ସେ ଦୁ'ଜଣ ଲୋକ ହାତ କଡ଼ି ନେଇ ପ୍ରତିମାର ହାତକୁ

ଝିଙ୍କ ଅଣି ହାତ କଡ଼ ପକାଇ ଦେଲେ ପ୍ରତିମା । ଖାଲି ଅନାଇଲା ତାଙ୍କ ମୁହଁକୁ ବକ ବକ କରି ।

ଗୋଟାଏ ଯାଗାରେ ବହୁତ ଗୁଡ଼ା କଟା ଯମା ହୋଇଛି । ଭଣ ଭଣ ହୋଇ ଗନ୍ଧ ବାହାରୁଛି । ଲଙ୍ଗୁଡ଼ା ପୋକଗୁଡ଼ା ସାଲୁସାଲୁ ହେଉଛନ୍ତି । ସେଠି ବହୁତ ଗୁଡ଼ାଏ କାଠ ଗଣ୍ଡି ପଡ଼ିଛି, ତା' ପାଖରେ କେତେ ଗୁଡ଼ା ଓଜନିଆ ଖିଠଣା । ଅଉ କେତେ ଗୁଡ଼ାଏ ସ୍ତ୍ରୀ ଲୋକ ବହୁ କଷ୍ଟରେ ପିଠଣା ଉଠାଇ କଟା ପିଟୁ ଛନ୍ତି, ତାଙ୍କ ଅଖିରୁ ଲୁହ ଧାର ଧାର ହୋଇ ଗଡ଼ ପଡୁଛି ।

ସିପାଇ ଦି' ଜଣ ନେଇ ପ୍ରତିମାକୁ ଗୋଟାଏ କାଠ ଗଣ୍ଡି ପାଟରେ ବସାଇ ଦେଲେ । ତା' ପରେ ଅଉ ଦି' ଜଣ ଚଗୁର ହୁଇ ବୋଝ କଟା ଅଣି ତା ପାଖରେ ଓଜାଡ଼ି ଦେଲେ । ସଙ୍ଗେ ସଙ୍ଗେ ଜଣେ ବାବୁ ଅସି ପ୍ରତିମା ମୁହଁ ପାଖରେ ବେତ ହଲାଇ କହିଲେ—ଏଇ ବେତକୁ ଅନା, ବାରଟା ବେଳକୁ ଯଦି ଏତେକ ବାଡେଇ ନଦେଉ—ତାହେଲେ ଦଶ ପାହାରେ ଏଇ ବେତରେ ବସିବ ।

ପ୍ରତିମା ଖାଲି କାନ୍ଦିଲା, ଉପାୟ ନାହିଁ ।

ଅଗରେ ବାପାଙ୍କୁ ଦେଖିଲା ଦଣ୍ଡ ପେଲୁଛନ୍ତି, ସେ ବା କଣ କରିବେ ଏ କାମ ଛାଡ଼ିକି ? ତା'ର ବାପା ତା ଅଡ଼କୁ ଅନାଇ ଲୁହ ଗଡ଼ାଇଲେ, ପ୍ରତିମା ଅତୁର ନୟନରେ ଚାହିଁଲା । ତାର ମନ ହଉ ଥାଏ ଦଉଡ଼ି ଯାଇ ବାପାଙ୍କୁ କୁଣ୍ଢାଇ ପକାନ୍ତା—କିନ୍ତୁ କେହି କାହା ଅଡ଼କୁ ଅନାଇ ବାକୁ ସୁଦ୍ଧା କଡ଼ା ହୁକୁମ ! ଅଣ୍ଟାରେ ଲୁଗା କାନିଟିକୁ ଭିଡ଼ିଦେଲା, ତା'ପରେ ଟ୍ରେହୁ ଓଜନିଆ ପିଠଣାକୁ ଉଠାଇ ପିଟିଲା କଟା ।

## ତିନି

ଏକ ମାସ ହେବ କମଳ କଟକରେ ପ୍ରଫେସରଙ୍କ ଘରେ ରହେ । ଏକ ମହାଲା କୋଠା । ଆଗରେ ଗୋଟିଏ ଛୋଟିଆ ଫୁଲ ବଗିଚା । ଘରଟି ଆଧୁନିକ ଧରଣରେ ସାଜ ସଜା, କିନ୍ତୁ କମଳକୁ ଏ ସବୁ ଭଲ ଲାଗେନା । ପ୍ରତିମା ପାଖରୁ ଆସିଲା ଦିନୁ ତାର ମନଟା ଆଦୌ ଭଲ ନାହିଁ । ସବୁବେଳେ ଭାବି ୨ ତାର ଦେହ ହାତ ଶୁଖି ଗଲାଣି । ସେ କେବଳ ଯନ୍ତ୍ର ଚାଳିତବତ୍ କିଏ ପାଖରୁ ଆସିଲେ ପଦେ ଅଧେ କଥା କହେ, ନହେଲେ ନାହିଁ, କେତେବେଳେ ଖାଏ କେତେବେଳେ ଭୁଲି ଯାଏ ଏ ସବୁ ଯେପରି ତା' ଅଜାଣତାରେ ହୋଇ ଯାଏ ।

ସେ ଦିନ କମଳ ପ୍ରତିମା କଥା ଭାବି ଭାବି ଝରକା ପାଖରେ ବସିଛି, ସେ ଚାହିଁଛି ଦୂରକୁ ଯେତେଦୂର ଯାଏ ତାର ଆଖି ପାଏ । ତାର ଅଜାଣତରେ ଆଖିରୁ ଦି ଧାର ଲୁହ ଗଡି ପଡିଲା କେବେଳେ କମଳ ରୁମାଲରେ ସେ ଲୁହ ପୋଛୁ ପୋଛୁ ତାର ଆଖି ପଡିଲା ବଗିଚା ଉପରେ ।

ଏକାଦଶଣୀ

ବଗିଚାଟିରେ ଫୁଟିଥାଏ ବହୁତ ଗେଣ୍ଡୁ ଓ ଗୋଲାପ । ସୁଲୁ ସୁଲୁଆ ବାଆ ବଗିଚା ଭିତରେ ଲୁଚକାଳି ଖେଳ ବୁଲୁଥାଏ । ଫୁଲ ଗୁଡ଼ିକ ଆନନ୍ଦରେ ମୁଣ୍ଡ ହଲା ହଲି ହୋଇ ଖେଳୁଥାନ୍ତି । ସେତିକିବେଳେ କୁଆଡୁ ଗୋଟାଏ କାଳିଆ ଭଁଅର ଭୁର୍ ବଜାଇ ଛୁଟିଆସେ । କୁମାରୀ ଫୁଲ ଗୁଡ଼ିକ ଭୟରେ ଜାଠିଆ ହୋଇ ଉଠନ୍ତି । କ୍ଷଣକରେ ଭଅଁରଟା ଖିର ହସେ ହସି ତାଙ୍କ କାନ ପାଖରେ କହେ ତମ ସଙ୍ଗାତ୍ ହେବ ଗୋ ! ଫୁଲ ଗୁଡ଼ିକ ଯେତେ ଭାକୁଡ଼ି ମିନତି ହୋଇ ମନା କଲେ ସୁଦ୍ଧା ଦୁଷ୍ଟ ଭଅଁରଟା ଶୁଣେନା । ଗଲେ ଗଲେ ବସି ତାଙ୍କର ନବ ମଧୁଟିକ ଶୋଷି ନେଲା ବେଳେ ସେମାନେ ଲାଜ ଛଟି ପିଟି ହୁଅନ୍ତି । କିନ୍ତୁ ଦୁଷ୍ଟ ଭଅଁ ରଟା ଶୁଣେନା । ଦଣ୍ଡେ ରହି ତା'ଙ୍କ ଉପରୁ ଉଠିଗଲା ବେଳେ ପୁଣି ଠିକିଏ ହସିଦିଏ । ଫୁଲ ଗୁଡ଼ିକ କାନ୍ଦୁଣି ମାନ୍ଦୁଣି ହୋଇ ଚାରିଆଡ଼କୁ ଥରେ ଚାହିଁ ଝାଉଁଳି ହୋଇ ପଡ଼ନ୍ତି କାଳେ କିଏ ଦେଖିଲା କି ? କମଳ ହଠାତ ଚମକି ପଡ଼େ ତା'ର ପ୍ରତିମା କଥା ଭାବି । ଭଅଁରଟା ପ୍ରତି ତାର ଅନ୍ତର ଘୃଣାରେ ପୂରି ଉଠେ । ସେ ଭାବେ ଦୁନିଆଁଟା ସମ୍ଭବ ଇମିତି, ଯାହାର ବଳ ନାହିଁ, ତାହା ସଙ୍ଗରେ ଅନ୍ୟଜଣେ ବଳବାନ ଲାଗି କଣ ଯଶ ଆନନ୍ଦ ପାଏ ।

ଠିକ ଏହି ସମୟରେ ପୋଷ୍ଟପିଅନ ଝରକା ପାଖରେ ଖଣ୍ଡେ ଚିଠି କମଳ ହାତକୁ ବଢାଇ ଦେଲା । କମଳ ପ୍ରତିମା ହୋଇ ଥିବ ଭାବି, ଉଦ୍ବେଗରେ ଖୋଲି ପକାଇ ତଳକୁ ଚାହିଁ ଦେଲା ତା'ର ପିଲା ଦିନର ସାଥି ନରେନ ।

କମଳ,

ତୋର ମନରେ ତୋର କଷ୍ଟ ଦେବାକୁ ମୋର ଆଦୌ ଇଚ୍ଛା ନାହିଁ । ତଥାପି ନ ଦେଇ ଯେ ମୋର ଉପାୟ ନାହିଁ । ଜମିଦାରଙ୍କ ଷଡ଼ଯନ୍ତ୍ରରେ ତୋର ପ୍ରତିମା ଓ ତା'ର ବାପା ଆଜକୁ ପନ୍ଦର ଦିନ ହେବ ଜେଲ ଯାଇଛନ୍ତି । ସେ ବିଷୟରେ ବେଶି ଲେଖିବା ବେଳକୁ ମୋର କଲମ ମୂକ ଅଟକି ଯାଉଛି । ଆଉ ଗୋଟିଏ କଥା, ତୋର ବାପା ଏଥି ମଧ୍ୟରେ ତୋତେ ଆଣିବାକୁ ଯିବେ । ତୋର ବିବାହ ହେବାର ସ୍ଥିର ହୋଇଛି ।

ଇତି

ମନରେ ଦମ୍ ଧରିଛି । ପ୍ରତିମା ପାଇଁ ମନ କଷ୍ଟ କରି ଦେହ-ହାତ କ୍ଷୀଣ କରିବୁ ନାହିଁ । ବର୍ତ୍ତମାନ ସବୁ ସହି ଯା' । ଭଗବାନ ଅଛନ୍ତି ।

ନମସ୍କାର

ତୋର

ନରେନ

କମଳ ଚିଠି ଖଣ୍ଡ ପଢ଼ୁ ପଢ଼ୁ ସେ ଖଣ୍ଡ ତା ହାତରୁ ଖସି ପଡ଼ିଲା । ଦେହରେ ପ୍ରାଣ ନଥିଲା ପରି ଲାଗିଲା । ତାର ଚାରି ପାଖରେ ଘୋଟି ଗଲା ଘୋର ଅନ୍ଧାର । ସେହି ଅନ୍ଧାର ଭିତରେ ତାକୁ ଜଣା ଗଲା କିଏ ଦୂରରେ— ଅତି ଦୂରରେ କାନ୍ଦି କାନ୍ଦି ଡାକୁଛି—ମୋତେ ନେଇ ଯାଅ । ତା' ହାତରେ ପଡ଼ିଛି ହାତ କଡ଼ି, ତା ପାଖକୁ ପଚାଶ ବର୍ଷର ଜଣେ ବୁଢ଼ା । ତାଙ୍କ ଅଖିରେ ବି ଲୁହ ।

ସେମାନେ କେତେ ବ୍ୟାକୁଳ ହୋଇ କହୁଛନ୍ତି—ଆମକୁ ଛାଡ଼ି ଦିଅ [illegible] ସିପାହି ଗୁଡ଼ା ଜମାରୁ ଛାଡ଼ୁ ନାହାନ୍ତି—ଓଲଟି ତାଙ୍କ ପିଠିରେ ବସାଉଛନ୍ତି ପାହାର । କମଳ ଏହି ପରି କେତେ କଣ ଭାବୁ ଭାବୁ ସେପଟୁ କେଉଁ ଜଳ ଯାଗାରୁ ଖସି ପଡ଼ିଲା ପରି ତାର ଚେତା ଅସେ, ପୁଣି ଚିଠି ଖଣ୍ଡିକ ଗୋଟାଇ ଆଣି ପଢ଼େ ।

ଆଜି କମଳ ଆଖିକୁ ଆଉ ନିଦ ନାହିଁ । କାନେ କାନେ ତିନିଅ ର୍ଦ୍ଧା ହେଲାଣି । ସବୁବେଳେ କେବଳ ତାର ଆଖି ଆଗରେ ନାଚି ଉଠୁଛି ପ୍ରତିମା । ବେଳେ ବେଳେ ସେ ଦାନ୍ତ କଡ଼ ମଡ଼ କରି ଉଠୁଛି, ତାର ପିତାର ବ୍ୟବହାରରେ । ଏହିପରି କେତେ କଣ ଭାବି ଭାବି କମଳ ଠିକ୍ କଲା, ମୋର ପ୍ରତିମା ଚାହାନ୍ତି—ମୁଁ ମଧ୍ୟ ଚିହ୍ନା, ମୋର ଧନ ସମ୍ପତ୍ତିରେ ଲୋଡ଼ା ନାହିଁ । ମୋର ଯେଉଁ ଧନ ଲୋଡ଼ା ସେ ଅଛି ଜେଲରେ । ମୁଁ ଅଉ ରହିବ କାହିଁକି ? ବାପା ଭାବିଛନ୍ତି ମୋତେ ଗୋଟାଏ ବିବାହ ଦେବେ ବୋଲି, ମୁଁ ତ କେଉଁ ଦିନୁ ବିବାହ ହୋଇ ସାରିଛି । ଆଉ ଗୋଟାଏ ତୋଳି ମନ୍ଦିର କଳାର ବାହାଦୂର କମଲ କର୍ତ୍ତା ବାହାଦୂର ହେବ ।

ଚିତ୍ରଭିକ୍ଷୁ

ବାଢ଼ି ଗୃହଟା । କମଳ ଉଠି ଖଟ ଉପରେ ବସିଲା । ଖଣ୍ଡେ କାଗଜରେ ତାର ବାପା ପାଖକୁ ଲେଖିଲା—

ପୂଜ୍ୟପାଦ ପିତା,

ଆପଣଙ୍କର ସବୁ ଷଡ଼ଯନ୍ତ୍ର ମୁଁ ବୁଝି ପାରିଲି । ଆଜିଠାରୁ ମୁଁ ଆପଣର ପୁତ୍ର ନୁହେଁ । ଏଠାରେ ଥିବା ସବୁ ସମ୍ପତ୍ତି ଆପଣଙ୍କର ରହିଲା । ମୁଁ ଆଜିଠାରୁ ନିରୁଦ୍ଦେଶ୍ୟ । ମୋତେ କେହି ଆଉ ଖୋଜିବ ନାହିଁ ।

ଆପଣଙ୍କର

କମଳ

ତହୁଁ ଆର ଦିନୁ ସକାଳୁ ପୁଝାରୀ, ଗୃହର ଉଠିଲେ ବେଳକୁ କମଳ ଆଉ ଘରେ ନାହିଁ । ସବୁ ଜିନିଷ ପତ୍ର ସିଏ ଯେମିତି ପଡ଼ିଛି । ଟେବୁଲ ଉପରେ ଖଣ୍ଡେ ଚିଠି, ସେ ଖଣ୍ଡ ତା' ବାପାଙ୍କ ପାଖକୁ ପଠାଇ ଦେବାକୁ ଲେଖା ହୋଇଛି ।

## ଯାଛି

ହଠାତ୍ ଦିନେ ସକାଳେ ଜେଲ ଭିତରେ କଏଦୀମାନଙ୍କ ମଧ୍ୟରେ ଭାରି ଚହଳ ପଡ଼ିଗଲା, ସମସ୍ତେ ଭାରି ବ୍ୟସ୍ତ ହେଲେ—ସମସ୍ତଙ୍କ ମୁହଁରୁ ଖାଲି ଅହା—କେଡେ ଭଲ ବୁଢ଼ାଟି ଥିଲା ରେ । କିଏ କେତେ ଆଖିରୁ ଲୁହ ଗଡ଼ାଇ କେତେ କଥା କହିଲେ ।

କ୍ଷଣକ ମଧ୍ୟରେ ଜେଲରେ ଥିବା, ସ୍ତ୍ରୀ ପୁରୁଷମାନଙ୍କ ମଧ୍ୟରେ ଏହି ସମ୍ବାଦ ଖେଳିଗଲା । ବୁଢ଼ାର ଗୁଣ ଗାଇ କିଏ ଆଖିରୁ ଦି' ଧୋପା ଲୁହ ଗଡ଼ାଇ ପୁଣି ଲୁଗା କାନିରେ ପୋଛି ନିଜ ନିଜ କାମରେ ଲାଗିଗଲେ । ଜଣେ ଯେ ଜେଲରେ ମରି ଯାଇଛି, ଏ କଥା ଭାବିବାକୁ କାହାର ଅବସର କାହିଁ ? ଜେଲର ନିଷ୍ଠୁର କର୍ମଗୃହ ଆସିଲେ ସେମାନଙ୍କ ପିଠିରେ ଚାବୁକ ଦେଇ ଜୋରରୁ ତାଙ୍କ ପର କାମ କରିବାକୁ ଅଡ଼େଇ ଦେଲେ । କାହା କଥା କିଏ ଶୁଣୁଛି ସେଠି, ହାଡ଼ଭଙ୍ଗା କାମ, ଶେଷରେ ଅଧା ପେଟ, ନିତି ନିର୍ଦ୍ଧାରିତ ବନ୍ଦୀ, ଜନ୍ମ ମରଣ ଏହି ପରି ଚାଲିଛି ନିତି ।

ପଇଁଛଣ

ପ୍ରତିମା କାମ କରିବାକୁ ଯେତେବେଳେ ବାହାରକୁ ଆସିଲା— ସମସ୍ତଙ୍କ ମୁହଁରୁ ଶୁଣିଲା—ଅହା, କି ସୁନ୍ଦର ଭଲ ମଣିଷଟା ଗଲା ଜେଲରେ । ପ୍ରତିମା ସମସ୍ତଙ୍କ ମୁହଁକୁ ବଲ ବଲ କରି ଅନାଇଲା—ଲୋକଙ୍କ କାହିଁକି ଏ ମନେ ଏତେ ବ୍ୟସ୍ତ ହେଉଛନ୍ତି, ଜଣେ ଯେ ଏହି ଯନ୍ତ୍ରାଳୟରୁ ବାହାରି ଗଲା—ସେ ତାର ଘରର ଅସ୍ଥିର ଜନକୁ ଦେଖିବ, ମୁକ୍ତ ଆଲୁଅରେ ସ୍ୱାଧୀନ ଭାବରେ ବୁଲିବ, ଏହାଠାରୁ ଆଉ ଭଲ କଣ ? ଏ ଲୋକ କେତେ କଷ୍ଟର ପ୍ରକୃତର ଲୋକ । ସେ ମାନଙ୍କ ସଙ୍ଗରେ ସମସ୍ତଙ୍କୁ ଏହି ପରି ରଖି ବାକୁ ବୃଦ୍ଧାନ୍ତ ପଥ

କିନ୍ତୁ ଯେତେବେଳେ ଶୁଣିଲା, ଜଣେ ବୁଢା ଚିର ଦିନ ପାଇଁ ଏ ସଂସାରରୁ ଚାଲିଗଲା ସେତେବେଳେ ସେ ଜାଣିବାକୁ ଇଚ୍ଛାକଲା କିଏ ସେ ବୁଢା । ପ୍ରତିମା ବଡ ଉଦ୍‌ବେଗ ଭାବରେ ସେହି ବନ୍ଦୀ ମାନଙ୍କ ଗହଳକୁ ତା ବାପାକୁ ଚାହିଁଲା ଯେ ପ୍ରତିଦିନ ତା ବାପାଙ୍କୁ ସେହି ଗହଳିରେ ଦେଖେ, ଆଜି ବଳକାର ଚାହିଁଲା କିନ୍ତୁ ସେମାନଙ୍କ ମେଳରେ ଆଉ ଦେଖିଲା ନାହିଁ । ତା ଛାତି ଧପ୍ ଧପ୍ ହୋଇ ପଡ଼ିବାକୁ ଲାଗିଲା ସେ ପୁଣି ସେହି ଗହଳିକୁ ଜନ ଜନ ଚାହିଁଲା—କିନ୍ତୁ କେଉଁଆଡ଼େ ଦେଖିଲା ନାହିଁ । ତାକୁ ଏଠାରୁ ପୃଥିବୀ ଦିଶିଲା ଅନ୍ଧାର । ଗଛ ପତ୍ର ଆଉ କିଛି ଦେଖା ଗଲା ନାହିଁ । ତା ମୁଣ୍ଡ ଘୂରିବାକୁ ଲାଗିଲା, ପ୍ରତିମା ସେଠାରେ ଆଉ ଠିଆ ହୋଇ ପାରିଲା ନାହିଁ । ଖୁବ ଜୋରରେ ଦଉଡ଼ି ଗଲା ସେହି ବନ୍ଦୀ ମାନଙ୍କ ମେଳକୁ । ଏଣେ ତେଣେ ବୁଲି ବୁଲି ପଚାରିଲା ବାପା ! ବାପା ! କେହି କିଛି କହିଲେ ନାହିଁ ।

କେତେବେଳକେ ଜଣେ ପଚାରିଲା—ଆଚ୍ଛା, ତୋ ନାଁ କଣ— ପ୍ରତିମା ?

—'ହଁ, ମୋ ନାଁ' ପ୍ରତିମା ।

"ଓହୋ ! ତାହାହେଲେ ସେଇ ତୋର ବାପ, ମରିବା ପୂର୍ବରୁ ଖୁବ ବିକଳ ହୋଇ ଡାକୁଥିଲେ ପ୍ରତିମା, ଦେଖିବାକୁ । ମଲା ବେଳେ ମୁଁ

ତା' ପାଖରେ ଥିଲି, ମୋ ହାତ ଧରି କହୁଥିଲା—ମୋ ଝିଅକୁ ଦେଖିଲେ କହିବ—ତା' କରମ । ଶେଷରେ ମଲା ପର୍ଯ୍ୟନ୍ତ ଠିକ୍ ଦେଖିବାକୁ ଖୋଜିଛି—ଓଠରୁ ହସ କମିଲା ନାହିଁ । ମା' ତାର ସେହି ପ୍ରବଳ ଇଚ୍ଛାକୁ କିଏ ପୂରଣ କରିବ । ଅସହ ଦୁଃଖ ଶୁଣିବାକୁ କିଏ କିଏ ଏଠି ଅଛି । ଅସହାୟ ପଶୁ ଠାରୁ ଅଧମ ସ୍ଥାନ । ଅସହ୍ୟ କଷ୍ଟ ମଣିଷ ପାଏ କିଏ ଜାଣେ । ଅନ୍ୟ ଜଣେ କହିବାକୁ ଯାଉ ଥିଲେ—ଅନ୍ୟ କହି ପାରିଲେ ନାହିଁ । ଚଳେ ବସିରହିଲା ।

ପ୍ରତିମା ତ' ଜନ୍ମ ହେଲେ ଯେଉଁ ବାପାମାଆଙ୍କରେ କଥା ବାଣ୍ଡି ହୋଇଛି—ଅନି ଯେ ଯେ ନାହାନ୍ତି—ଏକୁଟିଆ ଶୁଣିଲା ଛାଣି—ସେ ଆଜ କିଛି କହି ପାରିଲା ନାହିଁ, ଯେମିତି ଠିଆ ହୋଇଥିଲା—ସେମିତି । ସମସ୍ତେ ତା' ମୁହଁକୁ ଚାହିଁ ରହନ୍ତି—ପ୍ରତିମା ଅଖି ଦୁଇଟି ଲୁହରେ ଢଳ ଢଳ ହୋଇ ଆସିଲା କିନ୍ତୁ ତା' ଆଖିରୁ ଲୁହ ଗଡ଼ି ପଡ଼ିଲା ନାହିଁ । ହଠାତ୍ ତା' ଅଧରରୁ ଫୁଟି ଉଠିଲା ଠିକ୍ ଏମିତି ଗୋଟିଏ କରୁଣ ହସ ରେଖା । ସେ ହସ ଯିଏ ଦେଖିଛି ସିଏ ଭୁଲିବ, ବର୍ଷ ବର୍ଷ ଭୁଲି— । ' ଜୀବନରେ ସେ ପାସୋରି ପାରିବ ନାହିଁ । କିଛି ସମୟ ପ୍ରତିମା ନୀରବ ରହିଲା—କେତେ ବେଳେକେ ତା' ପାଟିରୁ କେବଳ ବାହାରିଲା ବାପା ମୋର ନାହାନ୍ତି, ମା' ମଧ୍ୟ ନଥିବେ, ଏକଥା, ତା' ପରେ ହଠାତ କାନ୍ଦି ପକାଇ ପଡ଼ିଲା ତଳେ । ସମସ୍ତେ ଜଣ କାମ ଛାଡ଼ି ଦଉଡ଼ି ଆସିଲେ—ପ୍ରତିମାର ଚେତା ନାହିଁ ।

ଏଠି ତାହା ସଙ୍ଗରେ କାର ସମ୍ପର୍କ ନାହିଁ—ତଥାପି, ଅନି ସବୁ ବନ୍ଦୀମାନଙ୍କ ଆଖିରେ ଲୁହ, ସମସ୍ତଙ୍କ ମନ ହଉଥାଏ କେତେ ଯାନ୍ତ୍ରଣା ଦବାକୁ—କିନ୍ତୁ ତାଙ୍କର ଆଯୁତ ନାହିଁ । ପଛେ ଅତଡ଼ କାରଣ ଜଣେ ଯେ ଆ କାମ ନ କଲେ ବଢ଼ିବ ପାହାର ଯାଏଁ ଯାଏଁ ।

ପ୍ରତିମାକୁ ଅଗ ପଛ ଜେଲ ଡାକ୍ତର ଖାନାକୁ ନେଇ ଗଲେ । ସେଠାରେ ତିନି ଦିନ ଦନ୍ତ ଧରି ଅଚେତ ହୋଇ ରହିଲା । କେତେ

ସଇଁକ୍ରିଷ

ବେଳେ ଟିକିଏ ଚେତା ଆସିଲେ କହନ୍ତି – ବାପା, ମୋର କାହାନ୍ତି—ମା ମଧ୍ୟ ନଥିବ । ପୁଣି ଅଚେତନ ହୋଇ ପଡ଼େ ।

ଦିନେ ସକାଳୁ ପ୍ରତିମା, କଅଁଳ ହାତ ଅନୁଭବ କରି ଚମକି ପଡ଼ିଲା । ଆଖି ମେଲି ଦେଖିଲା ସେହି ଭୀଷଣ କୃଷ୍ଣର ଜମିଦାର ନୁହେଁ—ପୂର୍ବ ପରିଚିତ "ନର୍ସ" । ପ୍ରତିମା ଭଲ କରି ଆଖି ମେଲି ଅନାଇଲା, ଟିକିଏ ହସିଲା । ଆଉ ପାରିଲା ନାହିଁ—ହୁଁ ହୁଁ ହୋଇ କାନ୍ଦି ନର୍ସକୁ କୁଣ୍ଢାଇ ପକାଇ ତାଙ୍କର କାନ୍ଧ ଉପରେ ମୁହଁଟି ଲୁଚାଇ ଦେଲା । ନର୍ସ ଅଖିରେ ଲୁହ, ପ୍ରତିମା ଅଖିରେ ଲୁହ—ଦୁହେଁ ଯାକ ନୀରବ । କାହାରି ପାଟିରୁ କଥା ନାହିଁ । କେତେ ବେଳେ ନର୍ସ ତା' ମୁଣ୍ଡର ବାଳ ଗୁଡ଼ିକ ସଜାଡ଼ି ଦେଉଁ ଦେଉଁ କହିଲା—ପ୍ରତିମା, ଉଠ ଆଉ କାନ୍ଦନା । ମନରେ ଦମ୍ଭ ଧର । ଆଉ ସେ ତୋର ବାପା ଫେରି ଆସିବନ । ପ୍ରତିମା—ପ୍ରତିମା—ବାସ୍ତବିକ ତୁ ମାନବୀ ନୁହଁ ଦେବୀ । ସୁନାରେ ପ୍ରତିମା, ମୁଁ ସବୁ ବୁଝିଛି, ତୁ ଦୋଷୀ ନୁହଁ—କିନ୍ତୁ—କିନ୍ତୁ ଆଉ ସେ ଉପାୟ ନାହିଁ ।

ପ୍ରତିମା—ତା'ର କାନ୍ଧରୁ ଧିରେ ମୁହଁଟି କାଢି କହିଲା, ଆଉ ଉପାୟ ନାଇ ? ତେବେ—କଣ—ଏଇ—ଏଇ ନିବୃତ କୋଠରିରେ ବାପାଙ୍କୁ ହରାଇ ଚିର ଦିନ ଏମିତି ରହିବାକୁ ପଡ଼ିବ !

—ନା' ବ୍ୟସ୍ତ ହୁଅନି—ପ୍ରତିମା ! ଆଉ ସେ ବେଶି ଦିନ ନୁହେଁ

—ବେଶି ଦିନ ନୁହେଁ—ମାନେ, ତା' ପରେ ।

—ବୁଝି ପାରିବୁ । ଏବେ ଶୀଘ୍ର ଗୃହ ଯିବୁ । ତୋର ଯିଏ ସବୁ ଥିବେ ତାଙ୍କୁ ଦେଖିବୁ । ଲୋକେ ଆଉ କେହି ଅଟକାଇ ପାରିବେ ନାହିଁ । ପ୍ରତିମାର ଅଖି ଦୁଇଟି ଆନନ୍ଦରେ ଛଳ ଛଳ ହୋଇ ଆସିଲା । ସେ ନର୍ସର ମୁହଁଟିକୁ ଧରି ହସି ହସି କହିଲା—ସତ କହୁଛ ? ମୁଁ ଏଠୁ ଚାଲି ଯିବି । ମୁଁ ସମସ୍ତଙ୍କୁ ଦେଖିବି ! କମଳ ଭାଇକୁ ଓ !

—ପ୍ରତିମା, ତୁ ବଡ ଭୁଲ କରୁଛୁ; ମତେ ସବୁ କଥା ନ କହୁ । ଅଚ୍ଛା, ତୁତ କମଳ ଭାଇ କଥା କେତେ ଥର କହିଲୁଣି । ସେ କିଏ, ତୁ ତାଙ୍କୁ ଚାହିଁକି ଏତେ ଖୋଜୁ ।

ପ୍ରତିମା ଟିକିଏ ହସି ହସି କହିଲା—ଜାଣି ବାକୁ ଇଚ୍ଛା କରୁଛ ? ତମ ଆଗେ ଅଛି ସବୁ କଥା ଲଚ୍ଛାଇ ପାରିବନି । ତମେ ମୋର ଜୀବନ ଦାତା—କମଳଭାଇ, ସିଏ ମୋର ସବୁ ।

—ତା' ହେଲେ କଣ ତୁ ବିବାହ କରିବୁ ?

—ନା' !

—ତାଙ୍କୁ ବିବାହ କରିବାକୁ ଇଚ୍ଛା କରୁଛୁ ।

''କେ ଜାଣେ ! ହଠାତ ପ୍ରତିମାର କଣ୍ଠ ରୁଦ୍ଧ ହୋଇ ଆସିଲା, ଆଖିରୁ ଲୁହ ଗଡ଼ି ପଡିଲା, କୋହ ଉଠାଇ କହିଲା—ଜୀବନରେ ଭଲ ପାଇଛି ତାଙ୍କୁ କଲ୍ଲ—କଲ୍ଲ ।

ନର୍ସଟି ଆଉ କଣ ପଚାରିବାକୁ ଯାଉ ଥିଲା ଆଉ ପଚାରିଲା ନାହିଁ—ପ୍ରତିମାର କଷ୍ଟ ଦେଖି ।

ପ୍ରତିମା ଓ ନର୍ସର ଏବେ ଭାରି ସାଙ୍ଗ । ନର୍ସ ଏବେ ଆଉ କେଉଁ ଖାନାର ଜିନିଷ କିଛି ଖାଇବାକୁ ଦିଏନା । ଭଲ ଜିନିଷ ପତ୍ର ନେଇ ପ୍ରତିମାକୁ ଖୁଆଏ । ଦିନରେ ଅନେକ ସମୟ ପ୍ରତିମାର ଦୁଃଖ-ଦୂର କରିବାର ପାଇଁ କଥା ବାର୍ତ୍ତା କରେ । ଜେଲର କୌଣସି କର୍ମଚାରୀ ତା' ପ୍ରତି ବିରକ୍ତ ହେଲେ ସୁଦ୍ଧା—ସେ କିଛି ଶୁଣେନା ।

ଈଶତ୍ରିଲକ୍ଷ

# ଆଠ

ଏଇ କେଇଦିନ ହେବ ପ୍ରତିମା ଲୋକଙ୍କରେ ପାଗଳୀ ବୋଲି ପରିଚିତା । ଦିନେ ପ୍ରତିମା ବାପା ମଲା କଥା ଶୁଣି ଯେଉଁପରି ହୋଇଥିଲା, ପୁଣି ଦିନେ ମା' ମଲା କଥା ଶୁଣି ସେପରି ଆଉ ହେଲା ନାହିଁ । ତା' ଆଖିରୁ ଲୁହ ଗଡ଼ିପଡ଼ିଲା ନାହିଁ, ଖାଲି ନୀରବ ରହିଲା ବହୁତ କ୍ଷଣ । ଏବେ ସେ ବେଳେ ବେଳେ ଗୁଣୁ ଗୁଣୁ ହୋଇ କଣ କହୁ କହୁ ହସେ, କାନ୍ଦେ, କମଳ ଭାଇ କମଳ ଭାଇ, ଡାକ ପକାଏ କିନ୍ତୁ ନର୍ସଟି ଯେତେବେଳେ ତା' ପାଖକୁ ଆସେ ସେତେବେଳେ ତାର ସବୁ ପାଗଳାମି କୁଆଡ଼େ ଛଡ଼ିଯାଏ । ନର୍ସଟି ସଙ୍ଗରେ ବହୁତ ଦୁଃଖ ସୁଖ ହୁଏ ।

ଦିନେ ନର୍ସ ପ୍ରତିମାର ଖଟ ଉପରେ ବସି ତା' ପିଠିକୁ ଅଉଁସି ଦେଉଁ ଦେଉଁ କହିଲା—ପ୍ରତିମା !

—ହିଁ,

—ତୁ ଯେଉଁ କମଳ ପାଇଁ ଦିନ ଘଡ଼ି ଝୁରୁଚୁ, ହୃଦୟ ଆସନରେ ଦେବତା ପରି ପୂଜା କରୁଚୁ, ତୋର ନବ ଯୌବନ ଫୁଲ ମନରେ ସାଇତି ରଖିଚୁ ସେ ଯଦି ଅନ୍ୟକୁ ବିବାହ କରେ—ତାହା-ହେଲେ ।

ମିଳନ

ପ୍ରତିମା ଚମକି ପଡ଼ିଲା ପରି କହିଲା—ନା, ନା, ତାଏ କମଳ ଭାଇ ? ତା' ହେବ ନାହିଁ, ସେ ଅନ୍ୟ କାହାରିକୁ ହୃଦୟରେ ଅର୍ପଣ କରି ପାରିବେ ନାହିଁ । ସେ ଦେବତା, ସେ ଦିନ ତାଙ୍କର ପ୍ରତିଷ୍ଠା ମୋର ଅନ୍ତରରେ ଅଟଳ ।

—ପ୍ରତିମା, ମୁଁ ଗୋଟିଏ କଥା କହିବି, ମନରେ କିଛି ଭାବିବୁନି ତ ? ଆଛା, ଆଉ ଦି' ଦିନ ପରେ ତ ତୁ ଏଠୁ ଖଲାସ ହୋଇ ଯିବୁ, ତୋର ତ ଆଉ ଦୁନିଆରେ କେହି କେହି ନାହିଁ—ତୋ କମଳ ଭାଇ ଛଡ଼ା । ସେ ପୁଣି ତୋର ପାଇଁ ସବୁ ସମ୍ପତ୍ତି ବାଡ଼ି ଛାଡ଼ି ଭୁଆଣ୍ଡେ ନିରୁଦ୍ଦେଶ ଭାବରେ ବୁଲୁଛି ବୋଲି ମୁଁ ଶୁଣୁଛି । ତାର ବାପ ଯେତେ ଲୋକ ପଠାଇ ଖୋଜ ଖବର କଲେ ପୁଅର କେଉଁଠି ମିଳି ନାହିଁ । ତେବେ ମୁଁ ଯେତେ ଦୂର ଅନୁମାନ କରୁଛି, ତୋ ଖଲାସ ଖବର ଶୁଣି ସେ ନିଶ୍ଚୟ ଆସିବ କିନ୍ତୁ ବର୍ତ୍ତମାନ ତୁ ଖଲାସ ହୋଇ—ଏ ଯୌବନ, ଅପୂର୍ବ ରୂପକାନ୍ତି ନେଇ ଯିବୁ କୁଆଡ଼େ ? ମୋ ଘରେ ସାନ ଭଉଣୀଟି ପରି ରହିଲେ କଣ କ୍ଷତି ହେବ ?

ପ୍ରତିମା ବାପ ମଲା କଥା ଶୁଣି ଥିଲା, ମା' ମଲା କଥା ଶୁଣିଥିଲା କିନ୍ତୁ ବର୍ତ୍ତମାନ ତା' କମଳ ଭାଇ, ତାରି ପାଇଁ ବାପର ସମ୍ପତ୍ତି ଛାଡ଼ି, ଭୋଗ ବିଳାସ ଛାଡ଼ି ନିରୁଦ୍ଦେଶ ହୋଇ ଥିବାରୁ ତାର ମନଟି ଭୁଆ ପିଲାଙ୍କ ପରି କାନ୍ଦି ଉଠିଲା । ସେ ଆଉ କିଛି କହି ପାରିଲା ନାହିଁ, ମୁହଁରେ ଲୁଗା ଦେଇ ନର୍ସ କୋଡ଼କୁ ଢଳି ପଡ଼ିଲା । ନର୍ସ ତା' ଆଖିରୁ ଲୁହ ପୋଛି ଦେଇ କହିଲା—ଛି, ମୋ ସୁନା ଭଉଣୀଟି ପରି, କାନ୍ଦେନା । ତୁ ଯାହା ଲାଗି ଏତେ ଭାବୁଛୁ, ତାକୁ ନିଶ୍ଚୟ ପାଇବୁ । ଭଗବାନ ତୋ କଥା ଶୁଣିବେ । ପ୍ରତିମା, ମୁଁ ଯେଉଁ କଥା ପଚାରିଲି ତାର ତ କିଛି ଉତ୍ତର ଦେଲୁନି ? ପ୍ରତିମା ମୁଣ୍ଡ ଟେକି ଲୁହ ଛଳ ଛଳ ଆଖିରେ ନର୍ସର ମୁହଁକୁ ଅନାଇ କହିଲା—ମୋର କଥା ନା, ମୋ ପରି ହୀନମାନଙ୍କୁ ତମଘରେ ସ୍ଥାନ ଦେବଟି ! ଆଛା କହିଲ ମୋ କମଳ ଭାଇକୁ ଦେବ ନା !

—ତୋ ହାତରେ ତୋ କମଳ ଭାଇକୁ ଦେବା ପାଇଁ ପ୍ରାଣ ପଣେ ଚେଷ୍ଟା କରିବି ।

—ଅଛା ରହିବି ।

ନର୍ସ ମୁହଁଟିରେ ଅନନ୍ଦର ଢେଉ ଖେଳି ଗଲା । ସେ ଆନନ୍ଦରେ

ଏକ୍ସୁଲି ଘ,

ଗପିବାକୁ ଲାଗିଲା—ବେଶ, ହୋ ମନରେ କଛ କଷ୍ଟ ହବନ । ମୋ ଘରେ
ଅଉ କେହି ନାହାନ୍ତି ମୋ ସାନ ଭଉଣୀଟି ଛଡ଼ା । ପୂର୍ଣ୍ଣିମା ତୋତେ
ଦେଖିଲେ ଭାରି ଖୁସି ହେବ, ଦୁହେଁ ସାଙ୍ଗ ରହିବ, ବୁଝିଲୁ ?

+ + +

ନର୍ସର ଘର ପଛଆଡ଼କୁ ଖଣ୍ଡିଏ ଛୋଟିଆ ଫୁଲ ବଗିଚା । ସକାଳୁ
ସଂଧ୍ୟା ବେଳ ଯାଏ ପ୍ରତିମା ଓ ପୂର୍ଣ୍ଣିମା ବଗିଚା ଭିତରେ ବୁଲି ବୁଲି ଫୁଲ ତୋଳନ୍ତି ।
ତା'ପରେ ଗଛ ମୂଳରେ ବସି ମାଳା ଗୁନ୍ଥନ୍ତି । ପ୍ରତିମା ମାଳା ଗୁନ୍ଥୁ ଗୁନ୍ଥୁ ଚମକି
ପଡ଼େ, ତାର ହାତ ଦୁଇଟି ଥମି ଯାଏ । ହାତରୁ ଫୁଲ ଖସି ପଡ଼େ । ଦଣ୍ଡେ
ନୀରବ ରହେ । ପୂର୍ଣ୍ଣିମା ତାକୁ ହଲାଇ ଦେଲେ—ତାର ଚେତା ଆସେ ।

— ପୂର୍ଣ୍ଣିମା ହସି ହସି ପଚାରେ—ଇଏ କଣ ?

—ପ୍ରତିମା କହେ କିଛି ନା । ପୂର୍ଣ୍ଣିମା ତାକୁ ଠେଲି ଦେଇ କହେ ବୁଝି
ପାରିଲିଣି ଯେ, ସେଇ କଥା । ପ୍ରତିମା ଟିକିଏ ଲାଜ ଲାଜ ହୋଇ ଫୁଲ
ମାଳାରେ ତାକୁ ଦ' ପାହାର ପକାଏ । ଦୁହେଁ ହସନ୍ତି, କିନ୍ତୁ ଭିତରେ
ଭିତରେ ପ୍ରତିମା ମନଟି ଜଳି ପୋଡ଼ି ଯାଉ ଥାଏ ।

ମାସ ମାସ ହୋଇ ଛ'ମାସ କଟିଗଲା । ଦିନ ଯେତିକି ଗଡ଼ିଯାଉ
ଥାଏ, ପ୍ରତିମା ମନରେ ସେତିକି ବେଦନା ଅଉ ଗୋଟାଏ ଅଜଣା ଭୟରେ
ଥରି ଉଠୁଥାଏ । କମଳ ଲାଗି ସବୁ ତାକୁ ବିଷ ପରି ଲାଗେ । ଭଲ ଲୁଗା
ଖଣ୍ଡେ ପିନ୍ଧିବାକୁ ଇଚ୍ଛା ହୁଏ ନା । ନର୍ସ ଓ ତାର ସାନ ଭଉଣୀ,
ତାର ମନକୁ ସବୁ ବେଳେ ପରିବର୍ତ୍ତନ କରିବାକୁ ଚେଷ୍ଟା କରନ୍ତି ।
ପ୍ରତିମା ତାଙ୍କର କଥାରେ ଟିକିଏ ହସେ, ଖେଳେ, ଭଲ କଥା ବାର୍ତ୍ତା
କରେ ସିନା, କିନ୍ତୁ ଯେତେବେଳେ ରାତି ଅସେ, ରଜନୀଗନ୍ଧାର କାଉଁର
ପରଶରେ ସାରା ଜଗତଟା କଳା ପାଲଟିଯାଏ, ଅଉ ଲୋକ ଗହଳ ଚହଳ
କମି ଆସେ, ସେତେବେଳେ ପ୍ରତିମାର ମନଟି ଦୁଃଖ ସାଗରରେ ବୁଡ଼ିଯାଏ
ସେ ବିଛଣାରେ ଖାଲି ପଡ଼ିରହେ କିନ୍ତୁ ତା ଅଖିକୁ ନିଦ ଅସେନା । ପୂର୍ଣ୍ଣିମା
କେତେ ଗପ କହେ କମଳ ସିଧା ଫେରି ଆସିବ ବୋଲି ସାନ୍ତ୍ୱନା
ଦିଏ, କିନ୍ତୁ ପ୍ରତିମାର ମନ ବୁଝେନା, ପୂର୍ଣ୍ଣିମା ନିଦରେ ଶୋଇ
ପଡ଼େ କିନ୍ତୁ ପ୍ରତିମା ଅଖିକୁ ନିଦ ଅସେ ନା, ହଠାତ୍ ଥରି ଉଠେ ।

ଆଖିରୁ କେତେ ଯୁଗର ବେଦନା ଭରା ଲୁହରେ ତକିଆ ଓଦା ହୁଏ । ସେ ନିଜ କଥା ଯେତେ ଭାବେନା, ତାହା ଅପେକ୍ଷା ଭାବେ ଅଧିକ କମଳ ଭାଇ କଥା । ସେ ଯେଉଁଠି ଥାଆନ୍ତୁ ପଛକେ କପର ସୁଖରେ ରହନ୍ତୁ ଏହାହିଁ ସେ ଦିଅଁ ପାଖରେ ଦିନ ରାତି ପ୍ରାର୍ଥନା କରେ ।

ରାତି ଗୋଟାକ ପାଖ କମଳ କଥା ଭାବି ଭାବି ଟିକିଏ ଛାଇ ନିଦ ଆସିଲେ, ବେଳେ ବେଳେ ତାକୁ ଜଣା ଯାଏ କିଏ କମଳ ଭାଇ ପରି, କେତେ ଶବ୍ଦରେ ଡାକ ଦିଏ—ପ୍ରତିମା ? ପ୍ରତିମା ଛାଇ ନିଦରୁ ହୁ କନା ଉଠେ କବାଟ ଫିଟାଇ ଦାଣ୍ଡକୁ ଚାହେଁ, ପୁଣି ଦଉଡ଼ ଯାଇଁ ବାରିକୁ ଚାହେଁ କିନ୍ତୁ କେଉଁଠି କାହାକୁ ନ ପାଇ ହତାଶ ମନରେ ପୁଣି ଘରକୁ ଫେରି ଆସି ବିଛଣାରେ ପଡ଼ି ରହେ ।

ପ୍ରତିମାର ଏପରି ଢଙ୍ଗ ଦେଖି ନର୍ସ ମନରେ ମଧ୍ୟ କଷ୍ଟ ଆସେ । ସେ ତାର ରୋଜଗାର ପଇସା ସମସ୍ତ ବ୍ୟୟ କରି, ଛୁଟି ନେଇ, କେତେ ଜାଗା ବୁଲେ, କେତେ ଆଡ଼କୁ ଲୋକ ପଠାଏ । କେଉଁଠୁ କେବେ କେବେ ଖବର ପାଏ, କମଳ ହୋଇଛି ପାଗଳ, କେତେବେଳେ ସେ କେଉଁଠି ବୁଲୁଛି ତାର ଠିକଣା ନାହିଁ । ନର୍ସ ଏ ନିଷ୍ଠୁର ଖବର ପ୍ରତିମାକୁ ଦେବାର ସୁଖ ପାଏନା' । କେବଳ ତାର ମନରେ ସାନ୍ତ୍ୱନା ଦେବାକୁ କହେ—ଲୋକ ପଠାଇଛି କମଳ ଆସିବ ।

ନର୍ସର ଏ ପଦକ କଥାରେ ପ୍ରତିମା ମୁହଁରେ ଟିକିଏ ହସ ଫୁଟି ଉଠେ । ସେ ନର୍ସର କଥାକୁ ସତ ବୋଲି ଭାବି ନିଏ । ନର୍ସ ପାଖରେ ବସି ତାର କମଳ ଭାଇ କଥା କେତେ କଣ ପଚାରେ ? କିନ୍ତୁ ନର୍ସ କହିବ କଣ, ତାକୁ ସାନ୍ତ୍ୱନା ଦେବା ପାଇଁ କେବଳ କହେ —ମୋ ସୁନା ଭଉଣୀଟି ପରା, ମନରେ ଏତେ କାହିଁକି କଷ୍ଟ କରୁଛୁ । ଭାବି ଭାବି ଦେହ ହାଡ଼ କେମିତି ହେଲାଣି, ଏମିତି ସବୁ ବେଳେ ଭାବିଲେ ଆଉ ଅବସ୍ଥା ରହିବ କି । ମନରେ ଦମ୍ଭ ଧର । ଭଗବାନଙ୍କ କୃପାରୁ ତୋର ମନ କାମନା ନିଶ୍ଚୟ ପୂର୍ଣ୍ଣ ହେବ । ନର୍ସ ଏ କଥା ଗୁଡ଼ିକ ତାକୁ କହୁଥିଲା ବେଳେ ପ୍ରତିମା ନିହାତି ଛୁଆ ପିଲାଟି ପରି ନର୍ସ ମୁହଁକୁ ବକ ବକ କରି ଚାହେଁ, ତାର ଆଖି ଦୁଇଟି

ତେସ୍ଲାଇଣ

ଆନନ୍ଦରେ ଉଦ୍ଭାସିତ ହୋଇ ଉଠେ । ନାଲି ନାଲି ଓଠ ଅଧର ଦୁଇଟି ଗର୍ବରେ ଫୁଲି ଉଠେ । ନର୍ସ ତାର ଏ ଢଙ୍ଗ ଦେଖି ମନେ ମନେ ଭାରି କଷ୍ଟ ଅନୁଭବ କରେ । ଗୋଟିଏ ସରଳା ବାଳିକା ମନରେ ଆଶାର ସଞ୍ଚାର କରି ସେ ସେ କେତେ ପାପ କରୁଛି ତାହା ମନେ ମନେ ଭାବେ ।

ଏମିତି କେତୋଟି ଦିନ ପ୍ରତିମାର ଦୁଃଖ ସୁଖରେ କଟିଗଲା । ସେ ଦିନେ ଦିନେ ଯାଇ ନର୍ସକୁ ପଚାରେ—କହୁଥିଲ ପରା, ଆଜି କମଳ ଭାଇ ଆସିବେ ବୋଲି, କାହାନ୍ତି ? ନର୍ସଟିର ମୁହଁ ରଙ୍ଗ ପଡ଼ି ଯାଏ । ସେ ତାର ଥୋଡ଼ି ଟିକୁ ଧରି କରି କହେ, ସେ ଆଜି ଏଠି ହେବେ ନା, ଲୋକ ପତ୍ର ପଠାଇଛନ୍ତି, କଣ କରିବ କହିଲ । ପ୍ରତିମା ହତାଶ ମନରେ ସେଠୁ ଫେରି ଆସେ ।

ପୁଣି ମାସ ମାସ ହୋଇ ଆଜି ଛଟି ମାସ ବିତି ଯାଇଛି । ଏବେ ପ୍ରତିମା ଭଲ କରି ବୁଝି ସାରିଲାଣି ଯେ ତାର କମଳ ଭାଇ ଆଉ ଆସିବ ନାହିଁ ।

ସେ ଦିନ ପ୍ରତିମା କମଳ କଥା ଭାବି ଭାବି ବିଛଣାରେ ଶୋଇଛି । ଗାଢ଼ ନିଦ ଆସି କି ନାହିଁ ସ୍ୱପ୍ନ ଦେଖିଲା—ରାତି ଦୁଇଟା ପହର, ଚାରିଆଡ଼େ ଶୂନ ଶାନ । କାଳ ଜହ୍ନ ଟିକିଏ ପଡ଼ିଛି । କେମିତି ଗୋଟାଏ ନଷ୍ଟ ବଡ଼ ମଶାଣିର ଗୋଟାଏ ବରଗଛ । ଚାରିଆଡ଼େ ଠାଏଁ ଠାଏଁ ମୁଣ୍ଡ ଖପୁରି ଗଡ଼ୁଛି, କଲିଆ, କୁକୁର ଗୁଡ଼ା ସାଉଁ ସାଉଁ ହେଉଛନ୍ତି । ପେଚାଟାଏ ଦଣ୍ଡେ ଧଡ଼ିଏ ଛାଡ଼ି କି ବିକଟ ସ୍ୱରରେ ଚିତ୍କାର ଛାଡ଼ୁଛି । ଆଉ କି ଦେଢ଼ଇ ଗୁଡ଼ାଏ ଏ ଗଛରୁ ସେ ଗଛକୁ ଉଡ଼ି ଯାଉଛନ୍ତି । ଗୋଟାଏ କଅଁବଣ ତଳରେ ଗୋଟାଏ ମଲା ମଣିଷର ଚିତା ଦହ ଦହ ହୋଇ ଜଳୁଛି । କେତେବେଳେ ଲିଭିଯାଉଛି, ପୁଣି ଦଣ୍ଡେ ଛାଡ଼ି ଦପ୍ କିନା ହେଲା ବେଳକୁ ମଶାଣିଟା ଯାକ ଆଲୁଅରେ ଝଲସି ଉଠୁଛି । ମଲା ମଣିଷର ମୁଣ୍ଡ ଗୁଡ଼ାକ ସତେ ଯେମିତି ସେହି ଆଲୁଅ ଆଡ଼କୁ ଚାହିଁ ହସୁଛନ୍ତି । ବରଗଛ ମୂଳେ ଏ ପାଖ ସେ ପାଖ ହୋଇ ଚାରି ପାଞ୍ଚଟା କଲିଆ ଶୋଇଛନ୍ତି । ହେଣ୍ଡାଟା ଭୁକି ଭୁକି ସେ ଗଛ ମୂଳରୁ ଏ ଗଛ ମୂଳକୁ ଦଉଡ଼ି ଆସୁଛି ଆଉ କୁକୁରଟା ଭୁକି ଭୁକି ତାକୁ ଗୋଡ଼ାଇ ଯାଉଛି । ସେହି ବରଗଛ ମୂଳକୁ ଲାଗି ଖଣ୍ଡେ ମଚାଣି ବୁଦାରୁ ସାପଟା କତରା ଓ

କେତେ ଖଣ୍ଡ ଚଣ୍ଡା କନା ଉପରେ ଶୋଇଛି କେମିତି କମଳ । ତା ମୁଣ୍ଡ ତଳେ ରହିଛି ଦରପୋଡ଼ା କେତେ ଖଣ୍ଡ କାଠର ଗଣ୍ଡି । ସେ କେମିତି ଜମାରୁ କମଳ ବୋଲି ଚିହ୍ନି ପାରୁନ । ହାତ ଗୋଡ଼ କୁଣ୍ଢାପରି ସରୁ, ଆଖି ଦୁଇଟା କେତେ ଗହ୍ୱରକୁ ପଶି ଯାଇଛି । ଗାଲ ଉପରକୁ ହାଡ ଦୁ'ଟା ଢେଣ୍ଟାପରି ବାହାରିଛି, ନଖଗୁଡ଼ାକ ବାଘନଖ ଠାରୁ ବଡ଼ ବଡ଼ । ଜଣ ଦାଢ଼ି ହାତେ ହାତେ ବଢ଼ି କ୍ଷ ବିକଟ ଦେଖା ଯାଉଛି, ପେଟ ପିଠି ଏକାଠି ଲାଗିଛି । ଛାତିରେ କେଉଁଠି କେତେ ଖଣ୍ଡ ହାଡ଼ ଅଛି ସବୁ ଖଣ୍ଡି ଖଣ୍ଡି ହୋଇ ଗଣି ହେଉଛି । ଦଣ୍ଡେ ଘଡ଼ିଏ ଛାଡ଼ି ତାର ଦମକାଏ କାଶ ଉଠୁଛି, ସେହି ଦମକାରେ ତାର ଆଖି ଦୁଇଟା ଉପରକୁ ଟେକିହୋଇ ଯାଉଛି, ନିଶ୍ୱାସ ବନ୍ଦ ହୋଇ ଯାଉଛି ଆଉ ତାହା ସଙ୍ଗରେ ଭକ ଭକ୍ ହୋଇ ବାହାରି ଆସୁଛି ଝଲକାଏ ଖଣ୍ଡ ରକତ । ଏହାପରେ କେତେ ଝଲକା ରକତରେ ଲୁଗା ପଟା ଭିଜି ଗଲାଣି, ମୁହଁରେ ରକତ ଲାଗି ଶୁଖି ଯାଇଛି, କମଳ ଅନବରତ ହେଉଛି ମରିଗଲି, ମରିଗଲି । ପୁଣି ଦଣ୍ଡେ ଘଡ଼ିଏ ଗଲା, ଏଥର ଯେଉଁ ରକତ ଝଲକାଏ ବାନ୍ତି ହେଲା, ସେହି ଝଲକାରେ ସେ ବ୍ୟତିବ୍ୟସ୍ତ ହୋଇ ପଡ଼ୁଛି । ପେଟାଟା ବୋବାଇ ଉଠିଲା ସଙ୍ଗେ ସଙ୍ଗେ କମଳ ବହୁ କଷ୍ଟରେ କେଡ଼େ ବିକଳ ହୋଇ କ୍ଷୀଣ ସ୍ୱରରେ ଡାକୁଛି ପ୍ରତିମା, ପ୍ରତିମା, ମୁଁ ମୋ-ପାଖକୁ ଆ ?

ପ୍ରତିମା ସତ ଘଟଣା ପରି ଚମକି ପଡ଼ି ଉଠି ଠିଆ ହେଲା—କମଳକୁ କୁଣ୍ଢାଇ ଧରିବାକୁ । ତାର ଆଡ଼କୁ ଚାହିଁଲା ବେଳେ କୁଆଡ଼େ ନାଇ, ଯନ୍ତ୍ରଣାର ଅଦ୍ଭୁତ ଶବ୍ଦ ଯାହା ସେ ଶୁଣିଲା । ସେ କେତେବେଳେ ଯେ କୁହଁ କୁହଁ ହୋଇ କାନ୍ଦୁଛି ତାକୁ ଜଣାନାହିଁ । ଆଖିରୁ ଲୁହ ପୋଛି ଦେଇ ପୁଣି ତାର ଆଡ଼କୁ ଥରେ ଅନାଇଲା କିନ୍ତୁ କିଛି ଦେଖି ପାରିଲା ନାହିଁ । ତା' ଆଖି ଆଗରେ ନାଚି ଉଠିଲା । ଶୁଭ୍ର ଶ୍ୱେତ ସରୁ ସୂତାଟିଏ । ସେଇ ସୂତାଟି ଯାଉଛି ସେହି ବରଗଛ ମୂଳକୁ ।

ପ୍ରତିମା ଦଣ୍ଡେ ସେହି ମଞ୍ଚିଶା ଉପରେ ବସିଲା । କେତେ କଣ ଭଲ ମନ୍ଦ ଭାବିଲା । କଣ କରିବ କିଛି ଠିକ୍ କରି ପାରିଲାନାହିଁ । ତାର କାନ ପାଖରେ ଖାଲି ଗୋଟିଏ କ୍ଷୀଣସ୍ୱର ଶୁଭିଲା—ପ୍ରତିମା ! ପ୍ରତିମା ! ମରିଗଲି ମରିଗଲି ।

ହରିକୃଷ୍ଣ

ସେହି ଦିନର ରାତି । ପୂର୍ଣ୍ଣିମା ନିଦରେ ଶୋଇ ଥାଏ, କେତେଟି ଥର ପରେ । ପ୍ରତିମା ଲନ୍ଠନଟି ଲଗାଇଲା ଆଉ କୌଣସି କଥା ନ ଭାବି ଖଣ୍ଡେ କାଗଜରେ—

ଭଉଣୀ,

ତମେ ମୋତେ ଭଲ ପାଉ ଥିଲ । ତମରି ହାତରେ ମୁଁ ମରଣ ପଥରୁ ଫେରି ଆସିଥିଲି । ତମେ ଭାବୁଥିଲ, ମୁଁ ମଧ୍ୟ ଆଶା ରଖିଥିଲି—ମୋର ଆଶା ପୂରଣ ହେବ, ତମର 'ହାତଯଶ' ରହିବ କିନ୍ତୁ ତା' ଦଇବ ହସାଇ ଦେଲା ନାହିଁ । ଅଙ୍କ ସାହା ନାହିଁ ସାଥି ନାହିଁ ମୁଁ ଯାଉଛି ମୋ ଗନ୍ତବ୍ୟ ପଥରେ । ମୁଁ ଜାଣି ପାରୁଛି ମୋର ହୃଦୟ ଦେବତା ବହୁ ଦୂରରେ ବିପଦରେ ପଡ଼ି ମୋତେ କେତେ ବିକଳ ହୋଇ ଡାକୁଛନ୍ତି । ଏହା ସତ କି ମିଛ ମୁଁ ଜାଣେ ନା, ତଥାପି ତାଙ୍କରି ଉଦ୍ଦେଶ୍ୟରେ ଯାଉଛି । ତମକୁ କହି ଯିବାକୁ ମୋର ଇଚ୍ଛା ହେଉଛି କିନ୍ତୁ କହିଗଲେ କଣ ତମେ ମୋତେ ଛାଡ଼ିବ । ମୁଁ ଜାଣେ କାଲି ସକାଳୁ ତମେ ଉଠିବ । ପ୍ରତିମା, ପ୍ରତିମା, ବୋଲି ଡାକି କେତେ ଖୋଜିବ, ପୂର୍ଣ୍ଣିମା ଫୁଲ ବଗିଚାକୁ ଯାଇ ଖୋଜି ଖୋଜି କେତେ କାନ୍ଦିବ, କିନ୍ତୁ ମୁଁ ଆଉ କଣ ଥିବି ! ମୋ ରାଣ ଭଉଣୀ, ମନରେ କଷ୍ଟ କରିବ ନାହିଁ । କିଏ ଜାଣେ ମୁଁ ଯାଉଛି ଯଦି ତମରି ହାତଯଶ ରହେ ତାହା ହେଲେ………

ସ୍ନେହର—ପ୍ରତିମା

ତା' ପରେ ପ୍ରତିମା ସେ ଖଣ୍ଡିକ ପୂର୍ଣ୍ଣିମାର ମୁଣ୍ଡ ଉପରେ ରଖି ଲନ୍ଠନ କମାଇଲା । କବାଟକୁ ଧୀରେ ଆଉଜାଇ ପଦାକୁ ଆସିଲା !

× × ×

ଉପରେ ଅସୀମ ଆକାଶ, ତଳେ ଗଛ ପତ୍ର ପୂର୍ଣ୍ଣ ବିରାଟ ସଂସାର । ତା'ରି ମଝିରେ ପ୍ରତିମା ଦଣ୍ଡେ ଠିଆ ହୋଇ ଘର ଆଡ଼କୁ ଅନାଇଲା । ଗଛ ପତ୍ରର ଫାଙ୍କରୁ ସାଇଁ ସାଇଁ ଶବ୍ଦ ହେଲା ଯେପରି ତାର ଦୁଃଖରେ ସମସ୍ତେ ଫୁଙ୍ଗି ଫୁଙ୍ଗି ହୋଇ କାନ୍ଦୁଛନ୍ତି । ପାଖ ବାଉଁଶ ଗଛ ଉପରୁ ପେଚାଟି ଏ ଥର ବିକଟ ଶବ୍ଦ କରି ରଡ଼ି ଉଠିଲା, ପ୍ରତିମା ତା'ରି ଆଡ଼କୁ ଥରେ ଅନାଇ ମୁଣ୍ଡ ନୁଆଁଇ କାହା ଉଦ୍ଦେଶ୍ୟରେ ଥରେ ଦଣ୍ଡବତ କଲା ।

ତା' ପରେ ଯୁଆଡ଼େ ତା ପାଦ ଯିଟା ମାଡ଼ି ପଡ଼ିଲା ।

ଉତ୍ସର୍ଗ

ମୋର ଭାଇ ଭଉଣୀ ମାନଙ୍କ କର କମଳରେ ।

ଲେଖକ